ବର୍ଷ : ୩୪ ମାର୍ଚ୍ଚ ୨୦୦୨ ଅଙ୍କ : ୩୭



ଭାରତ ଗାଥା

…୨୫



ବେତାଳ କଥା

…୧୯



ମାୟା ସରୋବର

…୧୧





## ସୂଚୀପତ୍ର




**SUBSCRIPTION**

**For USA and Canada**
**Single copy $2**
**Annual subscription $20**
***Remittances in favour of***
***Chandmama India Ltd.***
**to**
**Subscription Division**
CHANDAMAMA INDIA LIMITED
No. 82, Defence Officers Colony
Ekkatuthangal, Chennai - 600 097
E-mail : subscription@chandamama.org

**Gift Subscriptions**
**By Air Mail to All Countries**
**other than India**
**Twelve issues Rs. 900**
**Within India Rs. 120**
**by book post**
Send your remittances by Demand
Draft or Money Order favouring
'Chandama India Limited'

For booking space in this
magazine please contact :
**Chennai :**
Ph : 044-2347399
e-mail : advertisement @
chandamama.org
**Delhi :**
*Mona Bhatia*
Ph : 011-6515111/
655513/6565516
**Mumbai :**
**ShakeelMulla**
Ph : 022-2661599/
2661946/2653057


© The stories, articles and designs contained in this issue are the exclusive property of the Publishers. …em in any manner/ medium will be dealt with according to law.

ଓଡ଼ିଆପୋର୍ଟାଲ.ଇନ
Digitized By OdiaPortal.IN



ସଂସ୍ଥାପକ
ବି. ନାଗି ରେଡ୍ଡି ଓ ଚକ୍ରପାଣି

# କୃଷି ଓ ପାଣିପାଗ

ବହୁ ପାଶ୍ଚାତ୍ୟଦେଶ ପରି ସମ୍ପ୍ରତି ଭାରତ ଏହାର ପାଣିପାଗ ବିଶେଷଜ୍ଞ ଉପଗ୍ରହ ପ୍ରେରଣ କରିଛି । ଫଳରେ ସଠିକ୍ ପାଣିପାଗ ବିବରଣୀ ରେଡ଼ିଓ, ଟି.ଭି. ମାଧ୍ୟମରେ ପ୍ରସାରିତ ହୋଇ ପାରୁଛି । ତା ସତ୍ତ୍ୱେ କୃଷକ ଶ୍ରେଣୀ ପାରମ୍ପରିକ ଉପାୟରେ ପାଣିପାଗ ନିର୍ଦ୍ଧାରଣ କରିପାରୁଛନ୍ତି ।

କିଛି ଦିନ ତଳେ ସମ୍ବାଦ ପତ୍ରରେ ଏକ ରଚିକର ସମ୍ବାଦ ପ୍ରକାଶିତହୋଇଛି । ସୌରାଷ୍ଟ୍ରର ଜଣେ କୃଷକ ଗୁଜରାଟ କୃଷି ବିଶ୍ୱବିଦ୍ୟାଳୟ ର ଜୈନେକ ବୈଜ୍ଞାନିକଙ୍କୁ ପତ୍ର ଲେଖି ଜଣାଇଲେ ଯେ, ଆସନ୍ତା ପନ୍ଦର ଦିନ ମଧ୍ୟରେ ବର୍ଷା ହେବା ସୁନିଶ୍ଚିତ । ବୈଜ୍ଞାନିକ ଆଶ୍ଚର୍ଯ୍ୟହେଲେ ଯେତେବେଳେ କୃଷକବନ୍ଧୁ ଙ୍କ କଥା ସତ୍ୟରେ ପରିଣତ ହେଲା । ପନ୍ଦର ଦିନ ମଧ୍ୟରେ ପ୍ରଚୁର ବର୍ଷା ହେଲା । ସେ କୃଷକଙ୍କ ରହିବା କଥା: ଏହା ତାଙ୍କ ଜୀବନର ପ୍ରଥମ ଘଟଣା ନୁହେଁ । ସେ ଅନେକ ଥର ଏପରି ପାଣିପାଗ ସମ୍ପର୍କୀୟ ଭିବଷ୍ୟବାଣୀ କରିଛନ୍ତି ଓ ତାହା ସଠିକ୍ ପ୍ରତିପାଦିତ ହୋଇଛି ।

କୃଷକ ମାନଙ୍କ ପାଖରେ ପାଣିପାଗ ସମ୍ପର୍କୀୟ ଏପରି ବିରଳ ତଥ୍ୟର ଆବିଷ୍କାର କରି ଉକ୍ତ ବୈଜ୍ଞାନିକ ଗୁଜୁରାଟ, ସୌରାଷ୍ଟ୍ର ଓ ଭାରତର ବିଭିନ୍ନ ପ୍ରଦେଶର ଚାରିଶହ କୃଷକଙ୍କୁ ନେଇ ଏକ ସଂଘ ଗଠନ କଲେ, ଯେଉଁମାନେ ସେମାନଙ୍କର ପ୍ରକୃତି ସମ୍ପର୍କୀୟ ଅନୁଭୂତିରୁ ପାଣିପାଗ ସମ୍ପର୍କୀୟ ସୂଚନା ପ୍ରଦାନ କରୁଥିଲେ ! ପ୍ରାଚୀନ କାଳରେ ଭାରତ ବର୍ଷରେ ଥିଲେ ବରାହମୀର (ଅଷ୍ଟମ ଶତାବ୍ଦୀ) ଓ ଭାଡ଼ଲୀ (୧୨ଶ ଶତାବ୍ଦୀ)ଙ୍କ ପରି ପ୍ରଖ୍ୟାତ ବୈଜ୍ଞାନିକ ଯେଉଁମାନେ ପଶୁପକ୍ଷୀଙ୍କର ଶବ୍ଦରୁ ସୂଚନା ସଂଗ୍ରହ କରି ପାଣିପାଗ ସମ୍ପର୍କୀୟ ସ୍ଥିତି ପ୍ରଦାନ କରି ପାରୁଥିଲେ ।

ବରାହମୀରଙ୍କ 'ବୃହଦ୍‌ସଂହିତା'ରେ ବର୍ଣ୍ଣନା କରାଯାଇଛି, ବର୍ଷାଋତୁ ଆସିବାର ୪୫ ଦିନପୂର୍ବରୁ ହଳଦୀ ରଙ୍ଗର ପୁଷ୍ପର ପରିପ୍ରକାଶ ଘଟିଥାଏ । ଭାଦଲୀ ଆକାଶର ରଙ୍ଗ ଦେଖି ଜଳବାୟୁ ଓ ପାଣିପାଗ ବିଷୟରେ କହିଦେଇ ପାରୁଥିଲେ ।

ମାର୍ଚ୍ଚ-୨୩କୁ ବିଶ୍ୱଅନ୍ତରୀକ୍ଷ ଦିବସ ଭାବେ ପାଳନ କରାଯାଉଛି । ଏହି ଦିବସରେ ଆମେ ଭାରତର ଗୌରବମୟ ଅତୀତ ଓ ଏହାର ଅନ୍ତରୀକ୍ଷ ସମ୍ପର୍କରେ ଚର୍ଚ୍ଚା କରିପାରିବା ।

---

ସଂପାଦକ : ବିଶ୍ୱମ

Digitized By OdiaPortal.IN

‘ଭାରତ ବୀରପୁରୁଷ’ ପହେଳି ପ୍ରତିଯୋଗିତା ରେ ଭାଗ ନିଅ ଓ ପ୍ରଚୁର ପୁରସ୍କାର ପାଅ

# ଭାରତର ବୀର ପୁରୁଷ-୫

ଭାରତୀୟ ଇତିହାସ ବହୁ ରକ୍ତାକ୍ତ ଯୁଦ୍ଧରେ ପରିପୂର୍ଣ୍ଣ । ତୁମେ ସେ ଯୁଦ୍ଧର ବୀରମାନଙ୍କୁ ଚିହ୍ନିବ ?

**ତିନିଜଣ ସଠିକ୍ ଉତ୍ତର ଦାତାଙ୍କୁ ମିଳିବ ବାଇସାଇକେଲ୍.***

1. ଏହି ମରହଟ୍ଟା ବୀର ମୋଗଲ ସାମ୍ରାଜ୍ୟ ବିରୁଦ୍ଧରେ ଯୁଦ୍ଧ କରି ଆଉରଙ୍ଗଜେବ ଙ୍କୁ ଥର ହର କରି ଦେଇଥିଲେ । ପରିଶେଷରେ ତାଙ୍କୁ ଚକ୍ରାନ୍ତ କରି ଧରିନିଆଗଲା । ସେ କିଏ ?
   ..........................................................................

2. ଜାନୁୟାରୀ ୧୫, ୧୯୪୯ରେ ସେ ପ୍ରଥମ ଭାରତୀୟ କମାଣ୍ଡର ଇନ୍-ଚିଫ୍ ଭାବେ ଭାରତୀୟ ସେନାବାହିନୀର ଦାଇତ୍ୱ ଗ୍ରହଣ କଲେ । ସେ କିଏ ?
   ..........................................................................

3. ଏହି ଚୋଳରାଜା ବଙ୍ଗଳାର ରାଜ୍ୟ ମହାପାଳଙ୍କୁ ପରାସ୍ତକରି ଥିଲେ । ସେ ତାଙ୍କ ରାଜ୍ୟର ରାଜଧାନୀ ଗାଙ୍ଗୋଇକୋଣ୍ଡାଚୋଳପୁରମ୍ କୁ ଗଙ୍ଗାନଦୀରୁ ଜଳ ଆନୟନ କରିଥିଲେ । ସେ କିଏ ?
   ..........................................

4. ସେ ଭାରତୀୟ ସ୍ଥଳ ବାହିନୀର ପ୍ରଥମ ସେନାଦକ୍ଷ ତୁମେ ତାଙ୍କ ନାମ ଜାଣ କି ?
   ..........................................

5. ସେ ପ୍ରଥମ ମହୀଶୂର ଯୁଦ୍ଧ ଜୟ କରିଥିଲେ । ତାଙ୍କ ପୁତ୍ରମଧ୍ୟ ତତୋଧିକ ବୀର । ସେ କିଏ ?
   ..........................................................

ପ୍ରତେକଟି ପ୍ରଶ୍ନର ସଠିକ୍ ଉତ୍ତର ସୁନ୍ଦର ଅକ୍ଷରରେ ଲେଖି ପଠାଇବେ । ଏହି ପାଞ୍ଚଜଣ ବୀର ପୁରୁଷଙ୍କ ମଧ୍ୟରୁ କିଏ ତୁମର ପ୍ରିୟ ଓ କାହିଁକି ? ‘ମୋର ପ୍ରିୟ ବୀର ପୁରୁଷ’ ଦଶଟି ଶବ୍ଦରେ ଲେଖ ।

..........................................................................

..........................................................................

ପ୍ରତିଯୋଗୀଙ୍କ ନାମ: ..........................................................

ବୟସ: ..............................ଶ୍ରେଣୀ: ..............................

ଠିକଣା: ..........................................................................

..........................................................................

..........................................................................

ପିନ୍: ..............................ଫୋନ୍: ..............................

ପ୍ରତିଯୋଗୀଙ୍କ ଦସ୍ତଖତ ..........................................................

ଅବିଭାବକଙ୍କ ଦସ୍ତଖତ ..........................................................

ଦୟାକରି ଏହି ପୃଷ୍ଠାଟିକୁ ଚିରି ନିମ୍ନ ଠିକଣାରେ ପଠାନ୍ତୁ :

**Heroes of India Quiz- 6**
CHANDAMAMA INDIA LIMITED
No. 82, Defence Officers Colony
Ekkatuthangal, Chennai - 600 097.
On/before **April 5, 2002**

**Prizes brought to you by**

**HERO CYCLES**

HERO CYCLES LIMITED HERO

### ବିଶେଷ ସୂଚନା

୧. ଏହି ପ୍ରତିଯୋଗିତା ୮-୧୪ ବର୍ଷ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ।
୨. *ତିନିଜଣ ସଠିକ୍ ଉତ୍ତର ଦାତାଙ୍କୁ ଜହ୍ନମାମୁର ସମସ୍ତ ସଂସ୍କରଣ ଭିତ୍ତିରେ ବଛାଯିବ । ଯଦି କେହି ପ୍ରତିଯୋଗୀ ମୋ ପ୍ରିୟ ବୀର ପୁରୁଷଙ୍କ ସମ୍ପର୍କରେ ଏକାଧିକ ପ୍ରବେଶିକା ପତ୍ର ପଠାଇଥାନ୍ତି ତେବେ ତାହା ସର୍ବୋତ୍ତମ ଉତ୍ତର ଭିତ୍ତିରେ ଗ୍ରହଣ କରାଯିବ ।
୩. ବିଚାରକ ମାନଙ୍କର ନିଷ୍ପତ୍ତି ଚୂଡାନ୍ତ ଅଟେ ।
୪. ଏହି ପ୍ରତିଯୋଗିତା ସମ୍ପର୍କରେ ଚିଠି ପତ୍ର ଗ୍ରହଣ ଯୋଗ୍ୟ ନୁହେଁ ।
୫. ବିଜେତା ମାନଙ୍କୁ ପତ୍ର ଦ୍ୱାରା ଜଣାଇ ଦିଆଯିବ ।

Digitized By OdiaPortal.IN

# ପାଠକଙ୍କ ପତ୍ର

✵ 'ଜହ୍ନମାମୁ'ରେ ପତ୍ରସ୍ଥ କାହାଣୀ ଓ ଚିତ୍ର ଉଭୟବେଶ୍ ଭଲ ଲାଗୁଛି । ମୋ ଠାରୁ ମୋର ପାଖ ପଡୋଶୀ ଏହି ପତ୍ରିକାଟି ନେଇ ପଢନ୍ତି । ଏଥିରେ ଥିବା ଅନେକ କାହାଣୀ ଆମ ଜୀବନକୁ ବଦଳାଇ ଦେଇ ପାରେ । ଏହାର ରଙ୍ଗୀନ ଚିତ୍ର ମଧ୍ୟ ମନଲୋଭା । 'ଜହ୍ନ'ପରି ଏହି ପତ୍ରିକା ଜହ୍ନମାମୁ ତାର ସୌରଭ ବିକିରଣ କରେ । ମୋର ଆଶା ଓ ବିଶ୍ୱାସ 'ଜହ୍ନମାମୁ' ଆମକୁ ବାଟ ଦେଖାଇବ ।

- ଗଜାନନ ପ୍ରଧାନ, ସୋନପୁର



✵ 'ଜହ୍ନମାମୁ' ପୂର୍ବାପେକ୍ଷା ଆହୁରି ଭଲ ଲାଗୁଛି, 'ଭାରତ ଗାଥା', 'ଦେବୀ ଭାଗବତ', ଭାରତର ପରମ୍ପରାକୁ ଜାଣିବାରେ ଯଥେଷ୍ଟ ସହାୟକ ଅଟେ । ଭାରତର ସଂସ୍କୃତି ଓ ଇତିହାସ ରୁ ପିଲା ମାନେ ପ୍ରଭୃତ ମାର୍ଗ ଦର୍ଶନ ପାଇ ପାରୁଛନ୍ତି । ନିଜ ଦେଶର ପାଣି, ପବନକୁ ଜାଣିବାକୁ ଏହା ପ୍ରକୃତରେ ବେଶ୍ ସହାୟକ ।

- ଗିରିଜା ଶଙ୍କର ହୋତା, ଆଠମଲ୍ଲିକ

✵ ଦୀର୍ଘ ଦିନଧରି ମୁଁ 'ଜହ୍ନମାମୁ'ର ପାଠକ ରହିଆସିଛି । ଏଥିରେ ପ୍ରକାଶିତ କାହାଣୀ ମତେ ଖୁବ୍ ଭଲ ଲାଗେ । ପ୍ରଥମେ ଧାରାବାହିକ ଗୁଡିକ ବେଶ୍ ଭଲଲାଗୁଥିଲା । ପରବର୍ତ୍ତୀ ସଂଖ୍ୟାକୁ ଆଗ୍ରହର ସହ ଅପେକ୍ଷା କରୁଥିଲି । ଏବେ କଣ ପାଇଁ ଭଲ ଲାଗୁନାହିଁ ।

- ବିନାୟକ ମିଶ୍ର, କଟକ

✵ ଏବେ ଜହ୍ନମାମୁରେ କମ୍ ଗପ ପ୍ରକାଶ ପାଉଛି । ପିଲାମାନେ ଗପ ପଢିବାକୁ ଭଲ ପାଉଥିବାରୁ 'ଜହ୍ନମାମୁ' ବେଶୀ ଭଲ ଲାଗୁଥିଲା । ଏବେ ଗପ କମିଯିବାରୁ ଭଲ ଲାଗୁନାହିଁ । ଗପ ପାଇଁ ଏହି ପତ୍ରିକା ପିଲାମାନେ ନୁହଁନ୍ତି, ବଡମାନେ ମଧ୍ୟ ପଢୁଥିଲେ । ତେଣୁ ଗପ ସଂଖ୍ୟା ବଢାଇବେ

- ସ୍ନିଗ୍ଧା ମହାପାତ୍ର, ରାଉରକେଲା

ଓଡ଼ିଆପୋର୍ଟାଲ.ଇନ

Digitized By OdiaPortal.IN



# ମୋତେ କ'ଣ ମିଳିବ ?

ରାମହରି ଜଣେ ବେପାରୀ । ସେ ବହୁତ ଲୋଭୀ ଓ ଅତ୍ୟନ୍ତ ସ୍ୱାର୍ଥପର ସ୍ୱଭାବର ମଣିଷ । ସ୍ୱାର୍ଥପରତାର ଏକ ଚରମ ଉଦାହରଣ କହିଲେ ଅତ୍ୟୁକ୍ତି ହେବନାହିଁ । ବିନା ଲାଭରେ ସେ କାହାର କୌଣସି କାମ କରିଦେବା ପରି ଲୋକ ନୁହଁନ୍ତି ।

ଚିନ୍ତାମଣି ତା'ଙ୍କ ଘରେ ଭଡାରେ ରହୁଥିଲେ । ଛୋଟମୋଟ କାମ କରି ସେ ଅଳ୍ପକିଛି ରୋଜଗାର କରୁଥିଲେ । ଅଳ୍ପଦିନ ତଳେ ସେ ଅନ୍ୟ ଏକ ଗ୍ରାମରୁ ଚାଲି ଆସି ସେଠାରେ ବସବାସ କରିବା ଆରମ୍ଭ କରିଥିଲେ ।

ଦିନେ ରାମହରି ତା'ଙ୍କ ଦୋକାନରୁ ଫେରୁଥିବା ସମୟରେ ଦେଖିଲେ ଯେ, ଚିନ୍ତାମଣିର ଝିଅ କଲ୍ୟାଣୀ ତାଙ୍କ ନିଜ ଘରୁ ବାହାରି ଆସୁଛି ।

ସେ କଲ୍ୟାଣୀକୁ ପଚାରିଲା, ''ଝିଅ, କେଉଁ କାମରେ ଆସିଥିଲୁ ?''

''ନଡିଆରୁ କତା ଛଡେଇବା ପାଇଁ ଆପଣଙ୍କ ଘରୁ କଟୁରୀ ଦରକାର ପଡିଲା । ତାହା ନେଇଥିଲି, ଏବେ ଫେରାଇବାକୁ ଆସିଥିଲି ।'' କଲ୍ୟାଣୀ କହିଲା ।

ରାମହରି ମିଠା ସ୍ୱରରେ କହିଲେ: ''ଏ କଥା ଭଲ ହେଲାନି ଝିଅ । କଟୁରୀ ତ ଫେରାଇଦେଲୁ, ମାତ୍ର ତା'ର ବ୍ୟବହାର ଖର୍ଚ୍ଚ ବାବଦକୁ ମୋତେ ଗୋଟିଏ ନଡିଆ ଦେବା ଉଚିତ୍ ଥିଲା ।''

କଲ୍ୟାଣୀ ତୁରନ୍ତ ନିଜ ଘରକୁ ଯାଇ ଗୋଟିଏ ନଡିଆ ନେଇ ଆସିଲା ଓ ରାମହରିଙ୍କୁ ଦେଲା ।''

ଦୁଇଦିନ ପରେ ରାମହରି ଦ୍ୱିପ୍ରହରର ଭୋଜନ ପାଇଁ ଘରକୁ ଆସିଥିବା ବେଳେ, କଲ୍ୟାଣୀକୁ ତା'ଙ୍କ ଘରେ ଦେଖିବାକୁ ପାଇଲେ ଓ ପଚାରିଲେ, ''କଲ୍ୟାଣୀ, କେଉଁ କାମରେ ଆସିଥିଲୁ ?''

''ଆଜି ପର୍ବ ଥିଲା । ପିଠା କରିବା ପାଇଁ ମା'ର କଡାଇ ଦରକାର ପଡିଲା । ଆପଣଙ୍କ ଘରୁ ନେଇ ଯାଇଥିଲି । ରୋଷେଇ କାମ ସରି ଯିବାରୁ ଏବେ ଫେରାଇବାକୁ ଆସିଥିଲି ।'' କଲ୍ୟାଣୀ ହସି ହସି କହିଲା ।

''କଡେଇ ତ ଫେରାଇ ଦେଲୁ, ମାତ୍ର ତା'ର ବ୍ୟବହାର ଖର୍ଚ୍ଚ ବାବଦକୁ କ'ଣ ଆଣିଛୁ !'' ରାମହରି ପଚାରିଲେ ।

ଈଶ୍ୱର

ଓଡ଼ିଆପୋର୍ଟାଲ.ଇନ
Digitized By OdiaPortal.IN

କଲ୍ୟାଣୀର ମନେହେଲା, ସତେ ଯେପରି ତା'ର ବିରାଟ ଭୁଲ୍ ହୋଇ ଯାଇଛି । ସେ ସଙ୍ଗେ ସଙ୍ଗେ ନିଜ ଘର ଭିତରକୁ ଗଲା ଓ ଗୋଟାଏ ଥାଳିରେ ଦୁଇ ତିନି ପ୍ରକାରର ପିଠା ନେଇ ଆସିଲା । ରାମହରି ଖୁବ୍ ଖୁସିରେ ତା' ହାତରୁ ପିଠା ଥାଳି ନେଲେ ।

ମନ ଖୁସିରେ କଲ୍ୟାଣୀର ପିଠି ଥାପୁଡେଇ କହିଲେ, ''ଦେଖ୍ ଝିଅ, ଏବେଠାରୁ ଆମ ଘରୁ ଯଦି ଜିନିଷ ବ୍ୟବହାର ପାଇଁ ନେବୁ, ତେବେ ତା'ର ବ୍ୟବହାର ବାବଦକୁ କିଛି ନା କିଛି ଦେଇଯିବୁ । ମୋତେ ଯେପରି ତୋତେ ଆଉଥରେ କହିବାକୁ ନ ପଡେ । ତା'ହେଲେ ମୁଁ ବହୁତ ଖୁସି ହେବି ।''

କଲ୍ୟାଣୀ ହସିଦେଇ ସେଠାରୁ ଚାଲିଗଲା ।

ଏକ ସପ୍ତାହ ପରେ ଯେତେବେଳେ ରାମଚନ୍ଦ୍ର ଅନ୍ୟ ଏକ ଗ୍ରାମରୁ ନିଜ ଘରକୁ ଫେରୁ ଥିଲା, ଦେଖିଲେ ଯେ କଲ୍ୟାଣୀ ତାଙ୍କ ଘର ଭିତରୁ ବାହାରି ଆସୁଛି ।''

''କଲ୍ୟାଣୀ, କ'ଣ କିଛି ଫେରାଇବାକୁ ଆସିଥିଲୁ ?'' ସେ ହସି ହସି ପଚାରିଲେ ।

''ହଁ ଜେଜେ, କେବଳ ଫେରାଇଲି ନାହିଁ, ଆପଣଙ୍କ କହିବା ମୁତାବକ ଆଉ କାମ ବି ସାରି ଦେଇଛି ।'' କଲ୍ୟାଣୀ କହିଲା ।

''ଆମ ଘରୁ କ'ଣ ନେଇଥିଲୁ ?'' ରାମହରି ଉତ୍ସୁକ ହୋଇ ପଚାରିଲେ । ''ମୂଷାଯନ୍ତା ନେଇ ଥିଲି । ଆମ ଘରେ ବହୁତ ମୂଷା ହୋଇଛନ୍ତି । ସେମାନେ ଆମକୁ ବଡ ହଇରାଣ କରୁଛନ୍ତି । କେତେଟା ମୂଷା ଯନ୍ତାରେ ପଡିଲେ । ଖର୍ଚ୍ଚ ବାବଦକୁ ଆପଣଙ୍କୁ କିଛି ନା କିଛି ଦେବାକୁ ପଡିବ । ତେଣୁ ମୂଷାଯନ୍ତାରେ ପଡିଥିବା ଦୁଇଟି ମୂଷା ଆଣି ଆପଣଙ୍କ ଘରେ ଛାଡିଦେଲି । ଆପଣଙ୍କ ପୁଅକୁ ମୂଷାଯନ୍ତା ଫେରେଇ ଦେଇଛି, ତେବେ ଆପଣଙ୍କ କଥା ମୁଁ ଠିକ୍ ଭାବେ ପାଳନ କରିଛି ନା ?'' କଲ୍ୟାଣୀ ପଚାରିଲେ ।

ରାମହରି ମଥା ଚକ୍କର ଖାଇଗଲା । ହଠାତ୍ ତାଙ୍କ ମୁହଁରୁ କିଛି କଥା ବାହାରିଲା ନାହିଁ । କିନ୍ତୁ ଏହି ଘଟଣା ପରେ ରାମହରିଙ୍କ ସ୍ୱଭାବରେ ପରିବର୍ତ୍ତନ ଦେଖାଗଲା । ସେ ''ମୋତେ କ'ଣ ମିଳିବ'ର ନୀତି ତ୍ୟାଗ କଲେ । ଏବେ ସେ ଜଣେ ଉତ୍ତମ ମଣିଷ ଭାବେ ପରିଚିତ ।



ଓଡ଼ିଆପୋର୍ଟାଲ.ଇନ୍

Digitized By OdiaPortal.IN

ORISSA
*The soul of India*

## ତୁମ ପାଇଁ ପହେଳି !

# ଶିମିଳିପାଳ

ତୁମେ ଯଦିକେବେ ହାତୀ ସଫାରୀରେ ବସି ଶିମିଳିପାଳ ଯିବ, ସେଠି ଦେଖିବାକୁ ପାଇବ, ପ୍ରାୟ ଏକଶହ ବାଘ ଏକ ସୁନ୍ଦର ଅଭୟାରଣ୍ୟ ଭିତରେ ଘୁରି ବୁଲୁଛନ୍ତି । ଏହା ଭାରତବର୍ଷର ସେଇ କେତୋଟି ଜାତୀୟ ପାର୍କ ମଧ୍ୟରେ ପ୍ରଥମ ଯେଉଁଠି ବ୍ୟାଘ୍ର ସଂରକ୍ଷଣକୁ ପ୍ରାଥମିକତା ପ୍ରଦାନ କରାଯାଇଛି ଓ ଏହା ମୟୁରଭଞ୍ଜ ଜିଲ୍ଲାର ୨,୭୫୦ ସ୍କୋୟାର. କି.ମି. ବର୍ଗକ୍ଷେତ୍ର ମଧ୍ୟରେ ଅବସ୍ଥିତ ।

ଶିମିଳିପାଳର ବିସ୍ତୃତ ଜମି ଅରଣ୍ୟଆଚ୍ଛାଦିତ ଓ ୧୨ଟି ନଦୀ ଏହା ମଧ୍ୟରେ ପ୍ରବାହିତ । ଏହି ଦିଗନ୍ତ ବିସ୍ତାରୀ ଉଦ୍ୟାନ ଏତେ ବ୍ୟାପ୍ତ ଯେ, ଏହାର ଜଳବାୟୁ ଗୋଟିଏ ସ୍ଥାନରୁ ଅନ୍ୟ ଏକ ସ୍ଥାନ ମଧ୍ୟରେ ଭିନ୍ନ ଭିନ୍ନ । ଏଇଥି ପାଇଁ ଏଠି ବିଭିନ୍ନ ପ୍ରକାରର ଜୀବଜନ୍ତୁ ଦେଖାଯାଆନ୍ତି । ବଣ୍ୟ ଜନ୍ତୁପ୍ରିୟ ଦର୍ଶକବୃନ୍ଦ ଏଠାରେ ଚିତା ବାଘ, ମଗର, ବିଭିନ୍ନ ପ୍ରକାରର ସର୍ପ ଓ ସରିସୃପ ଏଠାରେ ଦେଖିବାକୁ ପାଇବେ । ପକ୍ଷୀ ଦର୍ଶକଙ୍କ କଥା କଣ ? ଶିମିଳିପାଳରେ ଆମେ ୨୩୦ କିସମର ପକ୍ଷୀ ଦେଖିବାକୁ ପାଇବା । ତୁମେ ତୁମର 'ବାଇନା କୁଲାର' ସାଥିରେ ନେବାକୁ ଭୁଲିବ ନାହିଁ । ପ୍ରକୃତିପ୍ରେମୀଙ୍କ ପାଇଁ ସ୍ଥାନର ମହତ୍ୱ ଅନେକ । ବଣ ଜଙ୍ଗଲର ପ୍ରାକୃତିକ ଦୃଶ୍ୟବଳୀ, ପାହାଡପର୍ବତ ଓ ପ୍ରପାତ ସମସ୍ତଙ୍କର ମନହରଣ କରିନିଏ । ଶିମିଳିପାଳ ଉଦ୍ୟାନ ମଧ୍ୟରେ ବରହିପାଣି, ଯୋରନ୍ଦା, ଚାହଳ ଓ ନାୱାନା ସେଇ କେତେକ ସ୍ଥାନ ଯେଉଁଠାରେ ତୁମମାନଙ୍କ ପାଇଁ ସୁନ୍ଦର ରହିବାର ବ୍ୟବସ୍ଥା କରାଯାଇଛି ।

---

### ତୁମ ପାଇଁ ପହେଳି !

୧୪ ବର୍ଷ ବୟସ ପର୍ଯ୍ୟନ୍ତ ଉଦ୍ଦିଷ୍ଟ
ପ୍ରତିଯୋଗୀତା-୭

୧. ଭାରତରେ କେତୋଟି ବ୍ୟାଘ୍ର ଅଭୟାରଣ୍ୟ ଅବସ୍ଥିତ ?

---------------------------

୨. ଶିମିଳିପାଳରେ ଏକ କୁମ୍ଭୀର ପ୍ରଜନନ କେନ୍ଦ୍ର ଅବସ୍ଥିତ ତାହା କେଉଁଠାରେ ?

---------------------------

୩. ଓଡିଶାରେ ଯେଉଁଠି ମହାନଦୀ ପୂର୍ବଘାଟକୁ ଅତିକ୍ରମ କରିଛି ସେଠାରେ କୁମ୍ଭୀରଚାଷ କରାଯାଏ । ସ୍ଥାନଟିର ନାମ କଣ ?

---------------------------

ତୁମର ଉତ୍ତର ଶୂନ୍ୟସ୍ଥାନ ଗୁଡିକରେ ସୁନ୍ଦର ସୁନ୍ଦର ଅକ୍ଷରରେ ଲେଖି କୁପନ ପୂରଣ କରି ଦିଆଯାଇଥିବା ନିମ୍ନ ଠିକଣାରେ ପଠାଇବ ।

ଓ.ଟି.ଡି.ସି. ପହେଳି ପ୍ରତିଯୋଗିତା
ଚାନ୍ଦମାମା ଇଣ୍ଡିଆ ଲିମିଟେଡ୍
ନମ୍ବର ୮୨, ଡିଫେନ୍ସ ଅଫିସ୍ର କଲୋନୀ
ଇକାଟୁଥାଙ୍ଗାଲ୍,ଚେନ୍ନାଇ - ୬୦୦ ୦୯୭

ନାମ : ---------------------------

ବୟସ : ---------------------------

ଠିକଣା: ---------------------------

ପିନ୍ ---------- ଫୋନ୍ ---------




Winners picked by Orissa Tourism in each contest will be eligible for **3 days, 2-night** stay at any of the **OTDC Panthanivas**, upto a maximum of four members of a family. Only original form will be entertained. The competition is not open to CIL and Orissa Tourism family members. [illegible] Paryatan Bhaven, Bhubaneswar - 751 014. Ph: (0674) 432177, Fax : (0674) 430887, e-mail : ortour@sancharnet.in. Website : Orissa-tourism.com

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN




# ମାୟା ସରୋବର

ବହୁ ଦିନ ତଳର କଥା । ଅମରାବତୀ ନଗରୀର ରାଜ ଦରବାରରେ କୁଳଶେଖର ନାମକ ଜଣେ ରାଜକର୍ମଚାରୀ କାର୍ଯ୍ୟ କରୁଥିଲେ । ତା'ଙ୍କର ଏକମାତ୍ର ପୁତ୍ର- ହେଉଛି ଜୟଶୀଳ । ବାଲ୍ୟ କାଳରୁ ମାତାଙ୍କର ବିୟୋଗ ଘଟିଥିବାରୁ କୁଳଶେଖର ତାଙ୍କ ପୁତ୍ର ଜୟଶୀଳକୁ ଖୁବ୍ ସ୍ନେହରେ ପାଳିଥିଲେ । ଯୁବାବସ୍ଥାରେ ପହଞ୍ଚିବା ବେଳକୁ ଜୟଶୀଳ ଅନେକ ବିଦ୍ୟା ସହିତ କ୍ଷତ୍ରିୟୋଚିତ ଯୁଦ୍ଧ ବିଦ୍ୟାରେ ମଧ୍ୟ ନିପୁଣତା ହାସଲ କରିଥିଲା ।

କୁଳଶେଖର ଚାହୁଁଥିଲେ ଯେ ତା'ଙ୍କର ପୁତ୍ର ରାଜଦରବାରରେ କାମ କରୁ ଓ ରାଜାଙ୍କର କୃପା-ଦୃଷ୍ଟିର ପାତ୍ର ହେଉ । ଏଥିପାଇଁ ସେ ନିଜ ସହିତ ପୁତ୍ରକୁ ନେଇଯାଇ ରାଜାଙ୍କୁ ସାକ୍ଷାତ କରାଇବାକୁ ଚାହୁଁଥିଲେ । ମାତ୍ର ଅଚାନକ ତା'ଙ୍କର ଦେହାନ୍ତ ଘଟିଲା ।

ଏବେ ଜୟଶୀଳ ଏକାକୀ ହୋଇ ପଡିଲେ । ବଦଭ୍ୟାସର ଶିକାର ହୋଇଥିବା କେତେକ ଯୁବକଙ୍କ ସହିତ ତା'ଙ୍କର ବନ୍ଧୁତା ବଢ଼ିଗଲା । ପିତାଙ୍କ ଅର୍ଜିତ ସମ୍ପତ୍ତି ଦେଖୁ ଦେଖୁ ଶୂନ୍ୟ ହେବାକୁ ବସିଲା । ସେ ଦିନରାତି ଜୁଆ ଖେଳିଲେ ଓ ସେହି ସ୍ଥାନରେ ପଡିରହିଲେ ।

ପିତାଙ୍କ ମୃତ୍ୟୁର ଚାରି ପାଞ୍ଚଦିନ ମଧ୍ୟରେ ତା'ଙ୍କର ସବୁ ସମ୍ପତ୍ତି ଚାଲିଗଲା । ଏବେ ତା'ଙ୍କର ଅବସ୍ଥା ବଡ ଦୟନୀୟ ହୋଇ ପଡିଲା । ଥରେ ଥରେ ତିନି ଚାରି ଦିନ ଯାଏଁ କିଛି ଖାଇବାକୁ ମିଳିଲା ନାହିଁ । ସେ ସେଇ ଜୁଆ ଆଡ୍ଡାରେ ପଡି ରହିଲେ ଓ ଲଜ୍ଜାରେ ବାହାରକୁ ବାହାରି ପାରିଲେ ନାହିଁ । କାହିଁକି ତା'ଙ୍କର ମୁଖରେ ଦାଢ଼ୀ ବଢ଼ି ଯାଇଥିଲା ଓ ପୋଷାକପତ୍ର ଅତ୍ୟନ୍ତ ମଳିନ ଦିଶୁଥିଲା ।

ତାଙ୍କ'ର ଜଣେ ବନ୍ଧୁ ଦେବଶର୍ମା ଏହି ଦୁର୍ଦ୍ଦଶା ଦେଖି ସହାନୁଭୂତି ପ୍ରକଟ କରି କହିଲେ, ''ଜୟଶୀଳ, ଯାହା ହେବାର ଥିଲା, ତାହା ଘଟିଗଲା । ତୁମେ ନିଜର ଏଇ ଅବସ୍ଥା ପାଇଁ ନିଜେ ହିଁ ଦାୟୀ । ତୁମେ ଏବେ ଜାଣି ପାରୁଥିବ ଯେ ଜୁଆ ମଣିଷକୁ କିପରି ସ୍ଥିତିରେ ନେଇ ପହଞ୍ଚାଇ ପାରେ । ଯିଏ ଥରେ ଏହାର ଜାଲରେ ପଡେ, ସେ ଆଉ ବାହାରକୁ ବାହାରି ପାରେ ନାହିଁ । ତୁମେ



Digitized By OdiaPortal.IN
ଓଡ଼ିଆପୋର୍ଟାଲ.ଇନ୍



ସେ ନମ୍ରତାର ସହ ତା'ଙ୍କୁ ପଚାରିଲେ, ''ଆପଣ ଏପରି ପିଟୁଛନ୍ତି କାହିଁକି ? ଏହା ଅଧର୍ମ, ଅନ୍ୟାୟ !

''ଜୁଆଡି ମୋତେ ନ୍ୟାୟ-ଅନ୍ୟାୟର ଉପଦେଶ ଦେଉଛି । ବାଃ, କି ବିଚିତ୍ର କଥା !'' ଏପରି କହି କୃପାଣଦିତ୍ ଜୟଶୀଳଙ୍କୁ ମଧ୍ୟ କୋରଡାରେ ଖୁବ୍ ଜୋରରେ ବାଡେଇଲେ ।

ଜୟଶୀଳ ଶରୀରରେ ଆଘାତ ଲାଗିବା କ୍ଷଣି ସେ କ୍ରୋଧିତ ହୋଇ ଉଠିଲେ ଓ ଏକ ଲାଠି ଉଠାଇ କୃପାଣଦିତର ମୁଣ୍ଡକୁ ପ୍ରହାର କଲେ । ଯନ୍ତ୍ରଣାରେ କାତର ହୋଇ କୃପାଣଦିତ ତରବାରୀ ବାହାର କରିବାରୁ ଜୟଶୀଳ ତା'ର କମରକୁ ଏକ ଶକ୍ତ ଲାତ ପକାଇଲେ । କୃପାଣ ଯନ୍ତ୍ରଣାରେ ଚିତ୍କାର କଲା ଓ ବହୁ କଷ୍ଟରେ ଉଠି ଠିଆ ହେଲା । ଏବେ ତା'କୁ ବୁଝିବାକୁ ଡେରି ଲାଗିଲା ନାହିଁ ଯେ, ଜୟଶୀଳ ସମ୍ମୁଖରେ ତା'ର କୌଣସି ଚାଲ୍ ଚଳିବ ନାହିଁ । ତେଣୁ ସେ ଦୌଡି ଯାଇ ଘୋଡା ପିଠିରେ ବସିଗଲା ଓ ସେଠାରୁ ପଳାୟନ କରିବାକୁ ଉଦ୍ୟତ ହେଲା । ଜୟଶୀଳ ମଧ୍ୟ ତା'କୁ ଛାଡିଲେ ନାହିଁ । ତେଣୁ ସେ ଦ୍ରୁତଗତିରେ ଯାଇ ସେହି ଘୋଡା ଉପରକୁ ଚଢ଼ିଗଲେ । ଗୋଟିଏ ହାତରେ ଲଗାମ ଧରିଲେ ଓ ଗୋଟିଏ ହାତରେ କୃପାଣଦିତର ଚୁଟିକୁ ଧରିଥିଲେ । ଘୋଡା ତା'ର ଅଭ୍ୟାସ ମୁତାବକ ରାଜଭବନ ସମ୍ମୁଖରେ ଆସି ଠିଆହେଲା ।

ଏହି ସମୟରେ ରାଜା ରାଜଭବନ ଉପରେ ଠିଆ ହୋଇ ମନ୍ତ୍ରୀଙ୍କ ସହିତ ବିଚାରବିମର୍ଷ ଚଳାଇଥିଲେ । ତା'ଙ୍କ ଦୃଷ୍ଟିରେ ଏହି ଦୃଶ୍ୟ ପଡିବାରୁ ସେ ନୌକରକୁ ସେହି ଦୁଇ ଦୁର୍ବୃତ୍ତଙ୍କୁ ଧରି ଆଣିବାକୁ ଆଦେଶ ଦେଲେ ।

ନୌକର କୃପାଣଦିତ ଓ ଜୟଶୀଳଙ୍କୁ ରାଜାଙ୍କ ସମ୍ମୁଖକୁ ନେଇଗଲା । ରାଜା ନିଜର ଅଶ୍ୱସର୍ଦ୍ଦାରକୁ ଚିହ୍ନିପାରିଲେ ଓ ଉଚ୍ଚସ୍ୱରରେ କହିଲେ,

ଶିକ୍ଷିତ, ସଚେତନ ଯୁବକ । ଏବେ ନିଜେ ନିଜକୁ ସମ୍ଭାଳ । ବିତିଯାଇଥିବା ଦିନକୁ ମନେ ପକାଇ ଦୁଃଖ । କିଛି ମିଳିବ ନାହିଁ ।'' ଏହିପରି ଦେବଶର୍ମା ଜୟଶୀଳଙ୍କୁ ଅନେକ ଉପଦେଶ ଦେଲେ ।

ଜୟଶୀଳ କିଛି ସମୟ ପାଇଁ ନୀରବ ରହିଲେ ଓ ଚିନ୍ତା କଲେ । ତା' ପରେ କହିଲେ, ''ମିତ୍ର ଦେବଶର୍ମା, ଜଣେ ପ୍ରକୃତ ବନ୍ଧୁ ଭାବେ ତୁମେ ମୋତେ ଉଚିତ ପରାମର୍ଶ ଦେଇଛ । ମୋର ଭବିଷ୍ୟତ କାର୍ଯ୍ୟପନ୍ଥା ମୋତେ ଯଥାଶୀଘ୍ର ନିର୍ଣ୍ଣୟ କରିବାକୁ ପଡିବ ।

ଦେବଶର୍ମା କିଛି ମନ୍ତବ୍ୟ ଦେବାକୁ ଯାଉଥିବା ବେଳେ ବାହାରୁ କୋଳାହଳ ଶୁଭିଲା । ରାଜାଙ୍କ ଅଶ୍ୱଦଳର ମୁଖ୍ୟ କୃପାଣଦିତଙ୍କ ସହିତ ଚାରିଜଣ ସୈନିକ ଜୁଆ ଆଡ୍ଡା ମଧ୍ୟକୁ ପ୍ରବେଶ କଲେ ଓ ସେଠାରେ ଉପସ୍ଥିତ ଥିବା ଲୋକମାନଙ୍କୁ କୋରଡାରେ ପିଟିବାକୁ ଲାଗିଲେ ।

ଜୟଶୀଳ ଏହି ଅନ୍ୟାୟ ସହି ପାରିଲେ ନାହିଁ ।

ଓଡ଼ିଆପୋର୍ଟାଲ.ଇନ



Digitized By OdiaPortal.IN

‘‘କୃପାଣଦିତ, ତୁମେ ଆମର ଅଶ୍ୱବାହିନୀର ମୁଖ୍ୟ ତୁମେ ଅଶ୍ୱ ଉପରେ ବସି କେଉଁ କସରତ ଦେଖାଉ ଥିଲ ?’’

କୃପାଣଦିତ ସବୁକଥା ସ୍ପଷ୍ଟ ଭାବେ ରାଜାଙ୍କୁ ଜଣାଇଲେ । ରାଜା ଶୁଣିବା ପରେ ଭୟଙ୍କର କ୍ରୋଧ ପ୍ରକାଶ କରି କହିଲେ, ‘‘ତୁମର ଭୀରୁତା ମୋର ସମଗ୍ର ସେନାବାହିନୀ ପ୍ରତି ଅପମାନ । ମୁଁ ତୁମକୁ ନିର୍ବାସନ ଦଣ୍ଡ ପ୍ରଦାନ କରୁଛି । ଏବେ ଏଠାରେ ତରବାରୀ ସମର୍ପଣ କର ଓ ଅବିଳମ୍ବେ ଦେଶ ତ୍ୟାଗ କର ।’’

କୃପାଣଦିତ ତରବାରୀ ଭୂମିରେ ରଖିଲା ଓ ମଥା ତଳକୁ କରି ସେଠାରୁ ବିଦାୟ ନେଲା । ତା’ପରେ ରାଜା ଜୟଶୀଳ ପ୍ରତି ତୀକ୍ଷ୍ଣ ଦୃଷ୍ଟି ପକାଇ କହିଲେ, ‘‘ରେ ଅଧମ କୁଆଡ଼ି, ମୁଁ ତୋତେ ମୃତ୍ୟୁଦଣ୍ଡ ଦେବି, ତୋ’ର କିଛି କହିବାର ଥିଲେ, କହିପାରୁ ।’’

ଜୟଶୀଳ ନିରାଶ ହୋଇଗଲେ । କିଛି କହିବାକୁ ତା’ଙ୍କ ପାଖରେ ଭାଷା ନ ଥିଲା । ତେଣୁ ସେ ଅତ୍ୟନ୍ତ ଦୀନ ସ୍ୱରରେ କହିଲେ ‘‘ମହାରାଜ ! ଆପଣ ଯେତେବେଳେ ମୃତ୍ୟୁର ଆଦେଶ ଦେଇ ସାରିଲେଣି, ମୁଁ ଆଉ ଅଧିକ କ’ଣ କହିବି ।

‘‘କ’ଣ ତୁମର ମୃତ୍ୟୁ ପ୍ରତି ଭୟ ନାହିଁ ?’’ ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ । ‘‘ଦରିଦ୍ରତାର ଭୟ ସମ୍ମୁଖରେ ପ୍ରାଣଦଣ୍ଡର ଭୟ କିଛି ନୁହେଁ, ମହାରାଜ !’’ ଜୟଶୀଳ ଉତ୍ତର ଦେଲେ । ମନ୍ତ୍ରୀ ହସ୍ତକ୍ଷେପ କରି କହିଲେ, ‘‘ମହାରାଜ, ସେ ହେଉଛି ସ୍ୱର୍ଗତ ରାଜକର୍ମଚାରୀ କୁଳଶେଖରଙ୍କର ଏକମାତ୍ର ପୁତ୍ର । ଆପଣ ତା’ ପ୍ରତି ଦୟା କରନ୍ତୁ ।’’

‘‘ଠିକ୍ ଅଛି, ମୁଁ ତା’କୁ ମୃତ୍ୟୁ ଦଣ୍ଡରୁ ମୁକ୍ତ କରୁଛି । କିନ୍ତୁ ତା’କୁ ନିର୍ବାସନ ଦଣ୍ଡ ଭୋଗିବାକୁ ପଡିବ ।’’ ରାଜାଙ୍କୁ ନମସ୍କାର ଜଣାଇ ଜୟଶୀଳ



ସେଠାରୁ ବାହାରି ଆସିବା ପାଇଁ ଉଦ୍ୟତ ହେବା ବେଳକୁ ରାଜା କହିଲେ ‘‘କୃପାଣଦିତର ତରବାରୀ ତୁମେ ପାଖରେ ରଖ, ଏକ ସପ୍ତାହ ମଧ୍ୟରେ ମୋ ରାଜ୍ୟର ସୀମା ବାହାରକୁ ଚାଲି ଯାଇଥିବ ।’’

ଜୟଶୀଳ ନଗରୀ ପରିତ୍ୟାଗ କରିବା ପାଇଁ ସାମାନ୍ୟ ବିଳମ୍ବ କଲେ ନାହିଁ । ଅରଣ୍ୟ ପ୍ରାନ୍ତ ମଧ୍ୟଦେଇ ସେ ଯାତ୍ରା ଆରମ୍ଭ କଲେ । ଏହିପରି ସାତଦିନ ଯାତ୍ରା କରିବା ସମୟରେ ସେ ଜଙ୍ଗଲର ଫଳ ଖାଉଥିଲେ ଓ ଝରଣାର ଜଳ ପିଉଥିଲେ । ଶେଷରେ ସେଦିନରେ ସୂର୍ଯ୍ୟାସ୍ତ ବେଳକୁ ଅନ୍ୟ ଏକ ଦେଶର ରାଜଧାନୀ ନିକଟରେ ପହଞ୍ଚିଗଲେ ।

ଜୟଶୀଳ ସେଦିନ ରାତ୍ରିରେ ଗୋଟିଏ ବରଗଛ ମୂଳେ ଶୋଇଗଲେ । କିଛି ସମୟ ମଧ୍ୟରେ ତା’ଙ୍କୁ ଗାଢ଼ ନିଦ ଆସିଗଲା । ଠିକ୍ ଅର୍ଦ୍ଧରାତ୍ର ବେଳକୁ କୋକିଶିଆଳୀ ମାନଙ୍କର ଚିତ୍କାର ଶୁଣି ସେ ନିଦରୁ ଉଠିପଡିଲେ । ଗଛ ଫାଙ୍କରେ କିଛି ଦୂରରୁ ଅଳ୍ପ ଆଲୋକ ଦିଶୁଥାଏ । କିଛି ସମୟ ପରେ ସେଠାରୁ

ଓଡ଼ିଆପୋର୍ଟାଲ.ଇନ୍



Digitized By OdiaPortal.IN



ଜୟଶୀଳ ସେଇ କାଳକାଳକୁ ଅଟକାଇ ନିର୍ଭୟରେ କହିଲେ, ''ତୁମେ ଯିଏ ବି ହୁଅନା କାହିଁକି, ମୁଁ ତୁମକୁ ଭୟ କରେ ନାହିଁ । କିନ୍ତୁ କାହା ପଛରେ ଗୋଡାଇ ତା'କୁ ବାଡେଇବାର ଦୃଶ୍ୟ ଦେଖି ମୁଁ ଥୟ ଧରି ପାରିବି ନାହିଁ । ତୁମେ ଏପରି କରି ପାରିବ ନାହିଁ ।''

ତା'ଙ୍କ କଥା ଶୁଣି କାଳକାଳ ବିକୃତ ହସ ହସି କହିଲା, ''ତୋର ସାହସକୁ ବଧାଇ ଜଣାଇବା କଥା । କିନ୍ତୁ ଆଗ ମୋର ପ୍ରକୃତ ସ୍ୱରୂପ ଦେଖି ସାର୍ ।'' ଏପରି କହି ସେ ନିଜ ଶରୀର ଉପରେ ଥିବା ଶ୍ୱେତବସ୍ତ୍ର ଆବରଣ କାଢ଼ି ଫିଙ୍ଗିଦେଲା ।

କାଳକାଳର ରୂପ ଅତି ଭୟଙ୍କର ଥିଲା । ତା'ର ଶରୀରର ରଙ୍ଗ ଗାଢ଼ କଳା ଓ ଆଖିରୁ ଆଲୋକ ବାହାରୁଥିଲା । ପାଟିରୁ ନିଆଁ ବାହାରୁ ଥିଲା । ସେ ଭୟଙ୍କର ଗର୍ଜନ କରୁଥିଲା ।

ଜୟଶୀଳ ମୁହୂର୍ତ୍ତକ ପାଇଁ ନିଶ୍ଚଳ ହୋଇଗଲା । କିନ୍ତୁ ସେ ତୁରନ୍ତ ନିଜକୁ ସମ୍ଭାଳିନେଲେ ଓ ନିଜ ତରବାରୀକୁ କାଳକାଳର ଛାତି ପାଖରେ ଲଗାଇ କହିଲେ: ''ଆରେ ଦୁଷ୍ଟ, ତୁମର ବିକୃତ ଆକାର ଦେଖି ମୁଁ ଡରିବି ନାହିଁ । ପଳାୟନ କରୁଥିବା ଲୋକକୁ ତୁମେ ପ୍ରହାର କରୁଛ ! ତୁମେ ମଧ୍ୟ ଜଣେ କାପୁରୁଷ ।''

କାଳକାଳ ଟିକେ ପଛକୁ ହଟିଯାଇ କହିଲା: ''ଯୁବକ, ତୋ'ର ସାହସକୁ ଧନ୍ୟବାଦ ଦେଉଛି । ଅମାନୁଷିକ ଶକ୍ତିକୁ କେବଳ ମହାସତ୍ୟ ନିଜର ଅଧୀନରେ ରଖିପାରିବ । ଏବେ ଯିଏ ମୋର ଆବାହନ କରିଛି, ସେହି ସିଦ୍ଧସାଧକ ଅଳ୍ପସତ୍ୟ ଅଟେ । ମୁଁ ତା'କୁ ନିଶ୍ଚୟ ମାରିବି ।'' ଏପରି କହି ସେ ଆଗକୁ ଯିବା ପାଇଁ ଚେଷ୍ଟା କଲା ।

ଜୟଶୀଳ ତା'ଙ୍କର ତରବାରୀ କାଳକାଳର ବକ୍ଷ ସମ୍ମୁଖରେ ରଖି, ପଛକୁ ବୁଲିପଡ଼ି ସିଦ୍ଧ ସାଧକକୁ

ଧୁଆଁ ଉଠିଲା । ଜୟଶୀଳ ଚକିତ ହୋଇ ସେ ଆଡକୁ ଧ୍ୟାନପୂର୍ବକ ଦେଖିଲେ । ହଠାତ୍ ସେଠାରୁ ଚିତ୍କାର ଶୁଭିଲା, ''ରକ୍ଷା କର ! ରକ୍ଷା କର ! ମହାକାଳ ମୋତେ ଗିଳିବା ପାଇଁ ଆସୁଛି !''

ଜୟଶୀଳ ତତ୍‌କ୍ଷଣାତ୍ ଠିଆ ହୋଇ ପଡି ତରବାରୀ ବାହାର କଲେ । ଯେଉଁ ଦିଗରୁ ଆର୍ତ୍ତନାଦ ଶୁଭୁଥିଲା, ସେହି ଆଡକୁ ଧାଇଁଲେ । ତାହା ଏକ ଶ୍ମଶାନ ଥିଲା । ଦୁଇ, ତିନୋଟି ଶବ ଜଳୁଥିଲା । ସେଠାରେ କଳା କପଡାରେ ଆବୃତ ଥିବା ଜଣେ ଲୋକ ଦୃଷ୍ଟିଗୋଚର ହେଲା । ତା'ର କେଶ ଅସ୍ତବ୍ୟସ୍ତ ହୋଇ ପଡିଥାଏ ଓ ସେ ଚିତ୍କାର କରି ପଳାୟନ କରୁଥାଏ । ଶରୀରରେ ଶ୍ୱେତ ବସ୍ତ୍ର ଧାରଣ କରିଥିବା ଜଣେ ବ୍ୟକ୍ତି ତା'ର ପଶ୍ଚାଦ୍‌ଧାବନ କରୁଥାଏ ଓ କହୁଥାଏ, ''ରହ, ସେଇଠି ରହ, ମହାକାଳର ଏଇ ସେବକ କାଳକାଳକୁ ଦେଖି ଥରହର ହୋଇ ଧାଇଁଛୁ, ପୁଣି ମହାକାଳକୁ ଆବାହନ କରୁଛୁ ।''

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

ଖୋଜିଲେ । ଏହି ସୁଯୋଗରେ କାଳକାଳ ଛାତି ଉପରୁ ତରବାରୀ ହଟାଇ ଦେଲା ।

କିନ୍ତୁ ଜୟଶୀଳ ତା'କୁ ଏତେ ସହଜରେ ଯିବାକୁ ଦେଲେ ନାହିଁ । ସେ ତୁରନ୍ତ କାଳକାଳର କଣ୍ଠକୁ ଲକ୍ଷ୍ୟ କରି ତରବାରୀ ନିକ୍ଷେପ କଲେ । ଫଳରେ ତା'ର ମସ୍ତକରୁ ଶରୀର ଅଲଗା ହୋଇ ଖଣ୍ଡେ ଦୂରରେ ଛିଟିକି ପଡିଲା । କିନ୍ତୁ ପରକ୍ଷଣରେ ସେହି ମସ୍ତକ ଛଟପଟ ହୋଇ ଅଟ୍ଟହାସ୍ୟ କରିବାରେ ଲାଗିଲା ଓ କହିଲା: ''ଜୟଶୀଳ, ନିଃସନ୍ଦେହରେ ତୁମେ ଜଣେ ମହାବୀର । ମୋର ରକ୍ତ ତୁମ ତରବାରୀରେ ଲାଗିଛି । ଏହାର ଅର୍ଥ ହେଉଛି ତୁମର ତରବାରୀ ଅମୋଘ ଶକ୍ତିଶାଳୀ । ଯାଅ, ଯେଉଁ ସିଦ୍ଧି ଲାଭ କରିବାକୁ ଇଚ୍ଛା କରିଛ ତାହା ସାଧନା କର ।''



ଜୟଶୀଳ ତା'ର କଥା ଶୁଣି ସ୍ତବ୍ଧ ହୋଇଗଲେ । ତା'ଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଛିନ୍ନମସ୍ତକ ପାଖରେ ପହଞ୍ଚି ତା'କୁ ଏପାଖ ସେପାଖ କଲେ । ମାତ୍ର ତାହା ନିର୍ଜୀବ ହୋଇ ସାରିଥିଲା । ସେ ଯାହାକୁ ବଧ କଲେ, ସେ ଖୁବ୍ ବଳଶାଳୀ ଥିଲା । ତା'ର କାନ ଓ ନାକରେ ସ୍ୱର୍ଣ୍ଣ ଆଭୂଷଣ ଥିଲା । ତା'ର କଣ୍ଠରେ ମୋତିମାଳ ଥିଲା । ଜୟଶୀଳ ଭଲଭାବେ ତା'ର ଶରୀରକୁ ଲକ୍ଷ୍ୟ କଲେ ।

ତା'ପରେ ତରବାରୀ ଖୋଳରେ ରଖିଦେଇ ସେ କଳା ବସ୍ତ୍ରରେ ଆବୃତ ଲୋକକୁ ଖୋଜିଲେ । ସେ ଆଖପାଖରେ ଦେଖା ଗଲା ନାହିଁ । କେଉଁଆଡେ ଚାଲିଗଲା ? ଭୟରେ ଅଚେତ୍ ହୋଇ କେଉଁ ଗଛମୂଳେ ପଡି ଯାଇନି ତ ? ଏପରି ଚନ୍ତା କରି ସେ ବରଗଛ ପାଖକୁ ଗଲେ । ଯେଉଁଠାରେ ସେ ପ୍ରଥମରୁ ବିଶ୍ରାମ ନେଇଥିଲେ ।

ବରଗଛ ଡାଳରେ ବସି ପେଚା ରାବୁଥିଲା । ଦୂରରୁ ଶିଆଳର ଚିତ୍କାର ଶୁଭୁଥିଲା । ତା'କୁ ମନେହେଲା, ଏଠାରେ ଆଉ ବିଶ୍ରାମ ନେବା ସମ୍ଭବ ନୁହେଁ, ତା'ଛଡା ତା'ଙ୍କୁ ଖୁବ୍ ଜୋର୍‌ରେ ଶୋଷ ଲାଗିଲା ।

''ମନେ ହେଉଛି, ରାତିର ତୃତୀୟ ପ୍ରହର ବିତିଗଲାଣି । ପାଖରେ କେଉଁଠି ପୁଷ୍କରିଣୀ ଥିଲେ ଶୋଷ ମେଣ୍ଟାଇନେବି । ସ୍ନାସ ବି ସାରିଦେବି ଓ ପାହାନ୍ତା ବେଳକୁ ନଗରୀକୁ ଚାଲିଯିବି । ତା'ଙ୍କର ବସ୍ତ୍ର ମଳିନ ଦିଶୁଛି । ସ୍ଥାନେ ସ୍ଥାନେ ଚିରି ଯାଇଛି । ତେବେ ମଧ ତରବାରୀକୁ ଦେଖି ଯେ କେହି ଭାବିବ ଯେ, ମୁଁ କୁଳୀନ ପରିବାରର ସନ୍ତାନ । ଯଦି ମୋତେ କେହି କିଛି ପଚାରେ, ତେବେ କହିଦେବି ଜଙ୍ଗଲରେ ସିଂହ ସହିତ ଲଢ଼ାଇ କରିଥିଲି ଓ ତା'କୁ ମାରିଦେଲି ।'' ଏପରି ଚିନ୍ତା କରି ଜୟଶୀଳ ସେ ସ୍ଥାନ ତ୍ୟାଗ କଲେ । ସେହି ଭୟଙ୍କର ଶ୍ମଶାନ ଟପି କିଛି ବାଟ ଆଗକୁ ଆସିବା ପରେ ସେ ଗୋଟିଏ ଛୋଟ ଘର ଦେଖିବାକୁ ପାଇଲେ । ସେଠାରୁ

Digitized By OdiaPortal.IN



ଗୋଟିଏ ଦୀପର ଆଲୋକ ଦିଶୁଥିଲା । ସେଠାକୁ ଯାଇ ସେ ବାହାରୁ ଡାକିଲେ, ''ମାଲିକ, ମୁଁ ଜଣେ ଯାତ୍ରୀ । ପିଇବାକୁ ମୁନ୍ଦେ ପାଣି ମିଳିବ ?''

ଗୋଟିଏ ଡାକରେ କବାଟ ଖୋଲିଗଲା । ଜଣେ ବୃଦ୍ଧା ହାତରେ ଦୀପ ଧରି ବାହାରକୁ ଆସି କହିଲା: ''ପୁତ୍ର, ଅନ୍ଧାର ହେବାକ୍ଷଣି କେଉଁ ଧର୍ମଶାଳାରେ ଶୋଇ ପଡିଥାନ୍ତୁ, ଏତେ ରାତିରେ କୁଆଡେ ଯାଉଛୁ ? ଭିତରକୁ ଆ ! ପାଣି ପିଇବୁ ।''

ଜୟଶୀଳ ଭିତରକୁ ଗଲେ । ଦୀପର ଆଲୋକରେ ବୃଦ୍ଧା ଜୟଶୀଳଙ୍କୁ ନିରେଖି ଚାହିଁଲେ ଓ ବିସ୍ମିତ ହୋଇ କହିଲେ: ''ମୁଁ ଭାବିଥିଲି, ତୁମେ ଜଣେ ତୀର୍ଥଯାତ୍ରୀ ହୋଇଥିବ । କିନ୍ତୁ ଏତେ ଅଳ୍ପ ବୟସରେ କମରରେ ତରବାରୀ ଖୋସି ଏହି ଅରଣ୍ୟ ପ୍ରାନ୍ତରେ ବୁଲୁଛ କାହିଁକି ?''

ଜୟଶୀଳ ପାଣି ପିଇ ସାରିବା ପରେ କହିଲେ, ''ଜଳଦାନ କରି ତୁମେ ମୋର ଜୀବନ ରକ୍ଷା କଲ । ମନେ ହେଉଛି, ଘରେ ଆଉ କେହି ନାହାନ୍ତି ।''

''ହଁ ପୁତ୍ର, ଆଉ କେହି ନାହାନ୍ତି । ମୋର ସନ୍ତାନ ନ ଥିଲେ ଗତବର୍ଷ ପତିଙ୍କର ଦେହାନ୍ତ ହେଲା । ସେ ରାଜ ଦରବାରରେ କାମ କରୁଥିଲେ । ତା'ଙ୍କ ମୃତ୍ୟୁ ପରେ ରାଜା ତା'ଙ୍କ ବେତନର ତିନିଭାଗରୁ ଏକଭାଗ ଏହି ଅସହାୟ ବୃଦ୍ଧାର ଭରଣପୋଷଣ ପାଇଁ ଦେଉଛନ୍ତି । ତା'କୁ ସମ୍ବଳ କରି ମୁଁ ଦିନ କାଟୁଛି ।'' ବୃଦ୍ଧା କହିଲେ ।

''ମା, ମୁଁ ଏହି ଅଞ୍ଚଳକୁ ପ୍ରଥମ ଥର ପାଇଁ ଆସିଛି । ଏହି ନଗରୀର ନାମ କ'ଣ ? କିଏ ଏହାର ରାଜା ?'' ଜୟଶୀଳ ଜାଣିବାକୁ ଚାହିଁଲେ ।

ବୃଦ୍ଧା ଧୀର ଶ୍ୱାସ ନେଇ କହିଲେ, ''ଏଇ ନଗରୀର ନାମ ହିରଣ୍ୟପୁର ଓ ରାଜାଙ୍କ ନାମ କନକାକ୍ଷ । ସେ ଜଣେ ଧର୍ମାତ୍ମା, ପ୍ରଜାପାଳକ ରାଜା । ମାତ୍ର ଏକମାସ ହେଲା, ତା'ଙ୍କ ପୁତ୍ର ଓ କନ୍ୟାକୁ କିଏ ଅପହରଣ କରି ନେଇଛି । ସେହି ଦିନଠାରୁ ରାଜା ଖୁବ୍ ମ୍ରିୟମାଣ ହୋଇ ରୋଗଗ୍ରସ୍ତ ହୋଇ ପଡିଛନ୍ତି ।''

ଜୟଶୀଳ ଚିନ୍ତାରେ ପଡିଗଲେ । ଜଣେ ରୋଗଗ୍ରସ୍ତ ରାଜାଙ୍କ ପାଖକୁ ସେ କେଉଁ ଚାକିରୀ ଆଶାରେ ଯିବେ ? ସେ ନିଜ ଚିନ୍ତା ତ୍ୟାଗ କରି, ରାଜାଙ୍କ ସମସ୍ୟା ସମ୍ବନ୍ଧରେ ଜାଣିବାକୁ ଉତ୍ସୁକ ହେଲେ ।

''ମା, ତା'ଙ୍କର କେହି ଶତ୍ରୁ ରାଜା ଏପରି କାମ କରିଥିବେ । ମୋର ଅନୁମାନ ଠିକ୍ ତ ?'' ଜୟଶୀଳ ପଚାରିଲେ ।

''ଯଦି ଏପରି ହୋଇଥାନ୍ତା, ତେବେ ଚିନ୍ତା କାହିଁକି ? ରାଜା କନକାକ୍ଷ ଶତ୍ରୁକୁ ପରାସ୍ତ କରି ନିଜର ପୁତ୍ର, କନ୍ୟାଙ୍କୁ ନେଇ ଆସନ୍ତେ । ଲୋକଙ୍କ କହିବା ଅନୁସାରେ, କେଉଁ ରାକ୍ଷସ କିମ୍ବା ଯକ୍ଷ ରାଜକୁମାରୀ ଓ ଯୁବରାଜଙ୍କୁ ଅପହରଣ କରିଛି ।''

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

ବୃଦ୍ଧା କହିଲେ ।

ବୃଦ୍ଧା ସେହି ବିଷୟରେ ଅଧିକ କିଛି କହିବାକୁ ଯାଉଥିଲେ, ଏତିକି ବେଳେ ବାହାରୁ କୋଳାହଳ ଶୁଭିଲା । ଜଣେ ଲୋକ କାନ୍ଦି କାନ୍ଦି କହୁଥିଲା: ''ମହାଶୟ, ଶ୍ମଶାନରେ ମୋ ପିତାଙ୍କର ଶିର କାଟିଥିବା ଲୋକ ଏହିଆଡେ ପଳାଇ ଆସିଲା । ଦେଖନ୍ତୁ, ଅଧାରାତିରେ ସେହି ବ୍ରାହ୍ମଣ ବୁଢ଼ୀ ଘରେ ଦୀପ ଜଳୁଛି । କୃପା କରି ତା'କୁ ପଚାରନ୍ତୁ, ସେ ହତ୍ୟାକାରୀକୁ ଦେଖିଥିବ ।''

''ତୁମେ ପରା ଶ୍ମଶାନର ପ୍ରହରୀ । କଥା ବନ୍ଦ କର । ସେଇ ମହାବୀର ଯାହାର ଶିର ଛେଦନ କରିଛି, ସେ ହେଉଛି କାଳକାଳ । କାଳକାଳ ନିଜକୁ ଭୂତପ୍ରେତମାନଙ୍କର ଗୁରୁ କହୁଥିଲା । ମୁଁ ସେ ସବୁ ବିଷୟରେ ଭଲଭାବେ ଜାଣିଛି ।'' ଆଉ କେହି ଜଣେ ଏପରି କହୁଥିଲା ।

ଏହି ଦୁଇଜଣଙ୍କୁ ଗାଳି କରି ତୃତୀୟ ଜଣକ କହୁଥିଲା, ''ତୁମେ ଦୁହେଁ ପାଟି ବନ୍ଦ କର । ଯେଉଁ ଶ୍ମଶାନର ପ୍ରହରୀ ମରିଥିଲା, ସିଏ ପୁଣି କେମିତି ଜିଇଁ ଉଠିଲା, ସେହି କଥା ଜାଣିବା ପାଇଁ ମନ୍ତ୍ରୀ ମୋତେ ଦାୟିତ୍ୱ ଦେଇଛନ୍ତି । ତୁମେ ଜାଣ, ମୁଁ ହେଉଛି ନଗର ରକ୍ଷକ । ମୋତେ ବାଧା ଦିଅ ନାହିଁ ।''

ଜୟଶୀଳ ସେମାନଙ୍କ କଥା ଶୁଣି ପାରୁଥିଲେ । ସେ ବୃଦ୍ଧାକୁ କହିଲେ: ''ମା, ମନେ ହେଉଛି ମୋତେ ଧରିବା ପାଇଁ ନଗର ରକ୍ଷକ ଓ କେତେଜଣ ସୈନିକ ଆସିଛନ୍ତି । ମୁଁ ଏଠାରେ ରହିବି କି ପଛ ପାଖ ଦରଜା ଦେଇ ବାହାରି ଯିବି ?

ବୃଦ୍ଧା କିଛି ଉତ୍ତର ଦେବା ପୂର୍ବରୁ ନଗର-ରକ୍ଷକ ଓ ତାର ସୈନିକ ମାନେ ଘର ପାଖକୁ ଆସି ବଡ ପାଟିରେ ଶବ୍ଦ କରି ଜୋର୍‌ରେ କବାଟ ଖଟଖଟ କଲେ ଓ କହିଲେ, ''ଭିତରେ କିଏ ଅଛ, ତୁରନ୍ତ କବାଟ ଖୋଲ !''

ଜୟଶୀଳ ଭୟଭୀତ ହୋଇ ପ୍ରଥମେ ବ୍ୟସ୍ତହେଲେ । ବୃଦ୍ଧା ଏପରି ଅବସ୍ଥାରେ ବିଚଳିତ ହେଉନଥିବାର ଦେଖି ତାଙ୍କୁ ବିସ୍ମିତ ଲାଗୁଥାଏ । ଏ ମଧ୍ୟରେ ବାହାରେ ଠିଆହୋଇଥିବା ନଗର ରକ୍ଷକ ଓ ସୈନିକ ଆହୁରି ଜୋର୍‌ରେ କବାଟ ପିଟିବାକୁ ଲାଗିଲା ସମସ୍ତେ ମିଳି ଯେପରି ବୃଦ୍ଧାଙ୍କ ଘର କବାଟ ଭାଙ୍ଗି ଦେବାକୁ ଚାହୁଁଥିଲେ । ଚର୍ତୁଦିଗରେ ଏକ ଭୟଙ୍କର ପରିସ୍ଥିତି ସୃଷ୍ଟି ହେଲା । ଏ ସମୟରେ ଜୟଶୀଳ ଚୁପ୍‌ଚାପ ବାରିପଟେ ଚାଲିଯିବାକୁ ଚାହିଁଲେ ।

*କ୍ରମଶଃ*



ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

# ଦଳପତି

ଦୁର୍ଗାପୁର ରାଜ୍ୟର ଏକ ପଡୋଶୀ ରାଜ୍ୟ ସହିତ ଯୁଦ୍ଧ ଲାଗିଗଲା । ପାହାଡିଆ ରାସ୍ତା ମଝିରେ ଗୋଟିଏ ବଡ ପଥର ପଡିଥିଲା । ସୈନ୍ୟମାନଙ୍କର ଯିବା ଆସିବାରେ ବାଧା ସୃଷ୍ଟି ହେଲା । ଦୁର୍ଗାପୁରର ସୈନିକମାନେ ତା'କୁ ରାସ୍ତାରୁ ହଟାଇବା କାମରେ ଲାଗି ପଡିଲେ । ଯଦିଓ ସେମାନେ ଯଥାସାଧ୍ୟ ଚେଷ୍ଟା କରୁଥିଲେ ତଥାପି ସଫଳ ହୋଇ ପାରୁ ନ ଥିଲେ । କିଛି ଦୂରରେ ଠିଆ ହୋଇ ଦଳପତି ସେମାନଙ୍କୁ ବିରକ୍ତ ହୋଇ କହୁଥିଲେ, ''ଏତେ ଲୋକ ଥାଇ ଲାଭ କ'ଣ ? ରାସ୍ତାରୁ ଖଣ୍ଡେ ପଥର କାଢ଼ି ପାରୁ ନାହଁ ।

ଏତିକିବେଳେ ଅଶ୍ୱ ପୃଷ୍ଠରେ ଜଣେ ଯୁବକ ସେଠାରେ ପହଞ୍ଚିଲେ । ସେ ଦଳପତିଙ୍କୁ କହିଲେ, ''ତୁମେ ସେହି ଦଶଜଣ ସୈନିକ ସହିତ ମିଶିଯାଇ ଚେଷ୍ଟା କଲେ, ହୁଏତ କାମଟି ସହଜରେ ହୋଇଯିବ । ଏକଥା କରୁନାହଁ କାହିଁକି ?''

''ମୁଁ ? ମୁଁ ହେଉଛି ଦଳପତି ।'' ଦଳପତି ଗର୍ବର ସହିତ କହିଲେ ।

ତା'ଙ୍କ କଥା ଶୁଣି ଯୁବକ ଅଶ୍ୱପୃଷ୍ଠରୁ ତଳକୁ ଆସିଲେ ଓ ସୈନିକଙ୍କ ପାଖକୁ ଗଲେ । ସେମାନଙ୍କ ମନରେ ଉତ୍ସାହ ଜଣାଇ କହିଲେ, ''ଆମେ ଏବେ ଏଗାର ଜଣ ହୋଇ ଗଲେ । ଆଉ ଭୟ କାହିଁକି ? ଚାଲ କାମ କରିକି ଦେଖାଇବା ।''

ଅଳ୍ପ ସମୟ ମଧ୍ୟରେ ସେମାନେ ରାସ୍ତାରୁ ପଥର ହଟାଇ ଦେଲେ । ଅଶ୍ୱାରୋହୀ ଯୁବକ ଆନନ୍ଦରେ ନିଜ ଅଶ୍ୱ ପୃଷ୍ଠରେ ବସିଲେ ଓ ଯିବା ବେଳେ ଦଳପତିଙ୍କୁ କହିଗଲେ: ''ଆଉ କେବେ ରାସ୍ତାରୁ ପଥର ହଟାଇବାକୁ ପଡିଲେ, ଦୁର୍ଗାପୁର ସେନାପତି ବୀରବର୍ମାଙ୍କ ପାଖକୁ ଖବର ପଠାଇବ ।''

ତା'ଙ୍କର ଏଇ କଥା ପଦକରୁ ଦଳପତି ଓ ସୈନିକମାନେ ଜାଣିଗଲେ ଯେ ସେହି ଅଶ୍ୱାରୋହୀ ଅନ୍ୟ କେହି ନୁହନ୍ତି ସ୍ୱୟଂ ସେନାପତି ।

-ମନଜିତ୍-



ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

ବେତାଳ
କଥା

# ସ୍ୱାର୍ଥପର

ନିଶା ଗରଜୁଥାଏ । ତୁହାକୁ ତୁହା ଶୀତଳ ପବନ ସାଙ୍ଗକୁ ମୃଦୁ ମୃଦୁ ବର୍ଷା । ବଣବୁଦା ଭିତରୁ ଭାସି ଆସୁଥାଏ ସାଇଁ ସାଇଁ ଶବ୍ଦ । ଶ୍ୱାନ, ଶ୍ୱାପଦଙ୍କ ରଡି ସାଙ୍ଗକୁ ଶୁଭୁଥାଏ ଅଶରୀରୀ ମାନଙ୍କର ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୋକରେ ଦିଶି ଯାଉଥାଏ ଭୟାନକ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେମାତ୍ର ବିଚଳିତ ନ ହୋଇ ସେହି ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟିଗଲେ ଏବଂ ବୃକ୍ଷାରୋହଣ ପୂର୍ବକ ଶବଟିକୁ ଉତାରି ଆଣିଲେ । ସେ ତା'କୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ

Digitized By OdiaPortal.IN



କରିବାମାତ୍ରେ ଶବସ୍ଥିତ ବେତାଳ କହି ଉଠିଲା, ''ରାଜନ୍ ! ମୁଁ ବୁଝି ପାରୁନାହିଁ ଯେ, ତୁମେ କେଉଁ ଲକ୍ଷ୍ୟ ସାଧନ ପାଇଁ ଅଦ୍ଧରାତ୍ରରେ, ଏହି ଭୟଙ୍କର ଶ୍ମଶାନରେ ଜଗି ରହିଛ । ଭୂତପ୍ରେତ, ହିଂସ୍ର ପଶୁ ତୁମକୁ ଆକ୍ରମଣ କରିପାରନ୍ତି । କିନ୍ତୁ ଦୁଃଖର କଥା, ଏତେବାର ଚେତାଇ ଦେବା ପରେ ବି ତୁମେ ମୋ କଥାକୁ ଗୁରୁତ୍ୱ ଦେଉ ନାହଁ । ଏତେ କଷ୍ଟ କରିବା ପରେ, ଯେତେବେଳେ ତୁମେ ଜାଣିପାରିବ ଯେ, ଯେଉଁ ବ୍ୟକ୍ତି ପାଇଁ ତୁମେ ଏତେ ବିପଦକୁ ବରଣ କରୁଛ, ସେ ଜଣେ ସ୍ୱାର୍ଥପର, ବିଳସୀ, ଚରିତ୍ରହୀନ ଲୋକ ତୁମେ ନିଶ୍ଚୟ ମନଦୁଃଖ କରିବ । ନିରାଶରେ ଭାଙ୍ଗି ପଡ଼ିବ । ତେଣୁ ମୋର ଉପଦେଶ ମାନ, ମୋ ଠାରୁ ଏହି କାହାଣୀ ଶୁଣ । ହୁଏତ ତୁମର ଉଦ୍ଦେଶ୍ୟ ବଦଳିଯାଇପାରେ ।'' ଏପରି କହି ବେତାଳ ଗପିବାର ଲାଗିଲା ।

ଯୁବକବି ତନ୍ମୟ ଦାସ ଦୁର୍ଗପୁର ନିବାସୀ ଅଟନ୍ତି । କବିତା ରଚନାରେ ତା'ଙ୍କର ଅସାଧାରଣ ଦକ୍ଷତା ରହିଛି । ଯେ କୌଣସି ବିଷୟବସ୍ତୁ ଉପରେ-କବିତା ରଚନା କରିପାରନ୍ତି । ଲୋକ ମାନେ ବଡ ଆଗ୍ରହରେ ତା'ଙ୍କ କବିତା ଶୁଣନ୍ତି ଓ ତନ୍ମୟ ହୋଇଯାଆନ୍ତି । ଯଥାସମ୍ଭବ ଉପହାର ପ୍ରଦାନ କରନ୍ତି । ତେଣୁ ତା'ଙ୍କର ଦିନ ଅରାମରେ କଟିଯାଏ । ଯେତେବେଳେ ସେ ବିବାହ କରି ସୁଖରେ ଜୀବନ ବିତାଇ ବାର କଥା ଭାବୁଛନ୍ତି । ସେ ଅଞ୍ଚଳରେ ଅକାଳ ପଡ଼ିଲା ।

ଆଗରୁ ଦୁଇବର୍ଷ ଧରି ବର୍ଷା ହୋଇ ନ ଥିଲା । ଗ୍ରାମ ତ୍ୟାଗ କରି ଅନ୍ୟ କେଉଁଠିକୁ ପଳାଇ ଯିବା ପାଇଁ ସେମାନେ ଚିନ୍ତା କରୁଥିଲେ ।

ଗ୍ରାମର ଜଣେ ଯୁବକ ଜଗବନ୍ଧୁ, ତନ୍ମୟଦାସଙ୍କୁ ଏହି ପ୍ରସ୍ତାବ ଜଣାଇଲେ । ପରିସ୍ଥିତିର ବାସ୍ତବିକତା ଓ ଗମ୍ଭୀରତା ବର୍ଣ୍ଣନା କରି ସେ କହିଲେ, ''ତୁମେ ମଧ୍ୟ ଆମ ସହିତ ଆସ । ତୁମକୁ ଛାଡ଼ି ଗ୍ରାମବାସୀ ଏଠାରୁ ଯିବେ ନାହିଁ ।''

ଜଗବନ୍ଧୁର କଥା ଶୁଣି ତନ୍ମୟଦାସ ବିଚଳିତ ହୋଇ ପଡ଼ିଲେ । ସେ ତୁରନ୍ତ ଗ୍ରାମର ମୁଖ୍ୟ ଚୌଧୁରୀ ବାବୁଙ୍କୁ ଭେଟିଲେ ଓ କହିଲେ, ''ଆପଣ କିଛି କରନ୍ତୁ । ଗ୍ରାମବାସୀ ମାନେ ଗ୍ରାମ ତ୍ୟାଗ କରିବାକୁ ନିଷ୍ପତ୍ତି ନେଉଛନ୍ତି ।'' ଚୌଧୁରୀ ବାବୁ ନିଜର ଅକ୍ଷମତା ପ୍ରକାଶ କରି କହିଲେ: ''ପରିସ୍ଥିତିର ଗମ୍ଭୀରତା ସମ୍ପର୍କରେ ମୁଁ ରାଜାଙ୍କୁ ଜଣାଇ ସାରିଛି । କିନ୍ତୁ କିଛି ସୁଫଳ ମିଳିଲା ନାହିଁ । ଯେଉଁମାନେ ଯିବାକୁ ଚାହାନ୍ତି, ସେମାନେ ଚାଲି ଯାଆନ୍ତୁ ମୁଁ କ'ଣ କରିପାରିବି ?''

ତନ୍ମୟଦାସ ନୀରବ ରହିଲେ ନାହିଁ । ସେ ଜଗବନ୍ଧୁକୁ ଦେଖା କରି କହିଲେ: ''ଆପଣ ମାନେ ମୋଟରେ ଦୁଇଶହ ଦେବେ, ଖାଇବାପିଇବା ଖର୍ଚ୍ଚ ବାବଦକୁ ଯାହା ଖର୍ଚ୍ଚ ହେବ, ମୁଁ ଦେବି । କେହି

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

ଗ୍ରାମ ତ୍ୟାଗ କରି ଯିବା ଦରକାର ନାହିଁ ।''

ଜଗବନ୍ଧୁ ତା'ଙ୍କ କଥାରେ ଆଶ୍ଚର୍ଯ୍ୟ ପ୍ରକଟ କରି କହିଲେ, ''ତୁମର ଉଦ୍ଦେଶ୍ୟ ଖୁବ୍ ମହତ । କିନ୍ତୁ କେତେଦିନ ଯାଏଁ ତୁମେ ଏପରି ସାହାଯ୍ୟ କରି ପାରିବ ?''

''ମୁଁ ଦୁଇଦିନ କେବଳ ଗ୍ରାମରେ ଘୁରି ବୁଲିବି । ଲୋକମାନଙ୍କର କଷ୍ଟକୁ ଅନୁଭବ କରିଛି । ପ୍ରତ୍ୟକ୍ଷ ଅନୁଭୂତିରୁ କବିତା ରଚନା କରିବି, ଯାହାକୁ ଶୁଣି ମହାରାଜାଙ୍କର ହୃଦୟ ତରଳି ଯିବ । ଯଦି ମୋ କବିତାରେ ଏତିକି ଶକ୍ତି ନାହିଁ, ତେବେ ମୁଁ କବିତା ଲେଖିବା ଛାଡି ଦେବି । ଗ୍ରାମରେ ଆଉ ପାଦ ରଖିବି ନାହିଁ ।''

ତନ୍ମୟଦାସ ଦୁଇଦିନ ଗ୍ରାମରେ ବୁଲାବୁଲି କଲେ । ଲୋକମାନଙ୍କର ଦୁଃସ୍ଥିତି ତା'ଙ୍କ ଉପରେ ଗଭୀର ରେଖାପାତ କଲା । ସେ ଅଦ୍ଭୁତ କବିତା ରଚନା କଲେ । ତାହା କଠୋରରୁ କଠୋରତମ ହୃଦୟକୁ ସ୍ପର୍ଶ କରିପାରିବା ଭଳି ଶକ୍ତିଶାଳୀ ଥିଲା । ସେ ତା'କୁ ଧରି ରାଜଧାନୀ ବାହାରିଲେ ।

ରାଜାଙ୍କ ଦରବାରରେ ପ୍ରବେଶ କରିବାକୁ ଗଲା ବେଳକୁ ପ୍ରହରୀ ତା'ଙ୍କୁ ଅଟକେଇଲା । ତନ୍ମୟଦାସ ତା'ଙ୍କୁ କହିଲେ: ''ମୁଁ ଜଣେ ବିଷ୍ଣୁଭକ୍ତ, ରାଜା ସାକ୍ଷାତ ବିଷ୍ଣୁ । ଜୟ ବିଜୟ ଦ୍ୱାରପାଳଙ୍କ ପରି ତୁମେ ମୋତେ ଅଟକାଉଛ କାହିଁକି ? ମୋର ଅଭିଶାପରେ ତୁମେ ଦୁହେଁ ରାକ୍ଷସ ଜନ୍ମ ପାଇବ । ଏବେ ତୁମେ ଯାହା କରୁଛ ଭାବିଚିନ୍ତି କରିବ ।'' ତନ୍ମୟଦାସ ଗୋଟିଏ କବିତା ଆବୃତ୍ତି କଲେ ।

ପ୍ରହରୀଦ୍ୱୟ ଜାଣି ପାରିଲେ ଯେ ତନ୍ମୟଦାସ ଜଣେ ସାଧାରଣ ଲୋକ ନୁହଁନ୍ତି । ସେମାନେ ତୁରନ୍ତ ରାଜାଙ୍କୁ ତା'ଙ୍କ ଆଗମନର ସୂଚନା ଦେଲେ । ରାଜା ସାଦରେ ତା'ଙ୍କୁ ସ୍ୱାଗତ ଜଣାଇଲେ ।

ଦରବାରରେ ଉପସ୍ଥିତ ହୋଇ ସେ ନିଜର



ପରିଚୟ ପ୍ରଦାନ କଲେ ଓ ଦୁର୍ଗାପୁର ଗ୍ରାମବାସୀଙ୍କର ଦୁର୍ଦ୍ଦଶାର ବର୍ଣ୍ଣନା ଥିବା ଗୋଟିଏ କବିତା ଶୁଣାଇଲେ । ତାହା ଶୁଣି ରାଜା ଓ ଦରବାରରେ ଉପସ୍ଥିତ ସବୁ ଲୋକଙ୍କର ଚକ୍ଷୁରୁ ଲୋତକ ଝରିପଡିଲା ।

କିଛି ସମୟ ପରେ ରାଜା ନିଜକୁ ସମ୍ଭାଳିଲେ ଓ ମନ୍ତ୍ରୀଙ୍କୁ ଆଦେଶ ଦେଲେ, ''ଦୁର୍ଗାପୁର ଗ୍ରାମକୁ ସବୁ ପ୍ରକାର ସହାୟତା ଯୋଗାଇ ଦିଆଯାଉ ।'' ତା'ପରେ ତନ୍ମୟଦାସ କହିଲେ: ''କବିବର, ଆପଣଙ୍କ କବିତା ମୋର ହୃଦୟକୁ ସ୍ପର୍ଶ କରିଛି । କେବଳ ଦୁର୍ଗାପୁର ନୁହେଁ, ଆପଣ ଦେଶର ଅନ୍ୟାନ୍ୟ ଅଞ୍ଚଳରେ ଥିବା ନିଃସହାୟ ଜନତାଙ୍କର ଉପକାର କରିବା କଥା ।'' ଏହା ଶୁଣି ତନ୍ମୟଦାସ ଖୁବ୍ ଆନନ୍ଦିତ ହେଲେ ଓ ତା'ପରେ ସେ ମନୋହର ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା କରାଯାଇଥିବା କବିତା ଶୁଣାଇଲେ । ସମସ୍ତେ କରତାଳି ଦ୍ୱାରା ତା'ଙ୍କୁ

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN




ଉଚ୍ଛ୍ୱସିତ ପ୍ରଶଂସା ଜଣାଇଲେ ।

ରାଜା ତା'ଙ୍କୁ ଦରବାରରେ ରାଜକବି ପଦବୀ ମଣ୍ଡନ କରିବା ପାଇଁ ଆମନ୍ତ୍ରଣ ଜଣାଇଲେ । କିନ୍ତୁ ତନ୍ମୟଦାସ ନିବେଦନ ଜଣାଇଲେ ଯେ, ଗ୍ରାମ ବାସୀଙ୍କ ଠାରୁ ସ୍ୱକୃତୀ ପାଇବା ପରେ ସେ ଏହି ପଦବୀ ଗ୍ରହଣ କରିବେ । ରାଜା-ବିଶେଷ ଅନୁରୋଧ କରିବାରୁ ସେ ସମ୍ମତ ହେଲେ । ଜଗବନ୍ଧୁ ଶୁଣିବାକୁ ପାଇଲେ ଯେ ତନ୍ମୟଦାସ ରାଜାଙ୍କ ପ୍ରସ୍ତାବ ଗ୍ରହଣ କରିଛନ୍ତି ଓ ରାଜଦରବାରରେ ରାଜକବି ଭାବେ ଯୋଗ ଦେଉଛନ୍ତି । ସେ ତୁରନ୍ତ ରାଜଧାନୀ ଅଭିମୁଖେ ବାହାରିଗଲେ ଓ ରାଜାଙ୍କୁ ସାକ୍ଷାତ କରି କହିଲେ, ''ମଣିମା, ତନ୍ମୟଦାସଙ୍କ କବିତା ବିନା ଆମ ଗ୍ରାମବାସୀମାନେ ବଞ୍ଚି ପାରିବେ ନାହିଁ । ସେମାନେ ଭୋକରେ ରହିବେ ପଛେ, କବିଙ୍କୁ ଛାଡି ପାରିବେ ନାହିଁ । ଏପରି ଜଣେ ମହାନ ବ୍ୟକ୍ତିଙ୍କୁ ଆମ ପାଖରୁ ଛଡାଇ ନେଇ ଆପଣ ଅନ୍ୟାୟ କରୁଛନ୍ତି । ଆପଣ ତା'ଙ୍କୁ ଆମ ଗ୍ରାମର ମୁଖ୍ୟ ଭାବେ ନିଯୁକ୍ତି ଦିଅନ୍ତୁ । ସେ ଆମ ସହିତ ରହିବେ ଓ ଆମର ଦେଖାଶୁଣା କରିବେ ।''

କିନ୍ତୁ ତନ୍ମୟଦାସ ଜଗବନ୍ଧୁର ବିନତିକୁ ଅସ୍ୱୀକାର କରି କହିଲେ, ''ମୁଁ ଅମର ନୁହେଁ ଯେ, ସବୁଦିନ ପାଇଁ ଏହି ସଂସାରରେ ରହିଥିବି । ସେତେବେଳେ ଦୁର୍ଗାପୁର ଗ୍ରାମବାସୀମାନେ କିପରି ରହିବେ ? ମୋତେ ରାଜ ଦରବାରରେ ରହିବାକୁ ଦିଅ । ମୁଁ ବେଳେ ବେଳେ ଦୁର୍ଗାପୁର ଯିବି ଓ ସେମାନଙ୍କୁ କବିତା ଶୁଣାଇବି । ଜୀବନର ମୌଳିକ ଆବଶ୍ୟକତା ହେଉଛି, ଆହାର, ବସ୍ତ୍ର ଓ ବାସଗୃହ, ସୁଖ ସ୍ୱାଚ୍ଛନ୍ଦ୍ୟମୟ ଜୀବନ ।''

ବେତାଳ ଏହି କାହାଣୀ ଶୁଣାଇବା ପରେ ରାଜାଙ୍କୁ କହିଲା, ''ରାଜନ୍, ଦୁର୍ଗାପୁରର

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

ଅଧିବାସୀମାନେ ତନ୍ମୟଦାସଙ୍କୁ ଖୁବ୍ ଭଲ ପାଉଥିଲେ, ସମ୍ମାନ କରୁଥିଲେ । ଏପରିକି ମରୁଡି ସମୟରେ ସେମାନେ ଗ୍ରାମ ତ୍ୟାଗ କରି ଯାଇ ନ ଥିଲେ, ଏଇଥିପାଇଁ ଯେ ସେମାନେ ତନ୍ମୟଦାସଙ୍କୁ ଛାଡି ରହି ପାରିବେ ନାହିଁ । ତନ୍ମୟଦାସ ନିଜ କବିତାରେ ଗ୍ରାମର ଦୁଃସ୍ଥିତି ବର୍ଣ୍ଣନା କଲେ । ଫଳରେ ରାଜା ପ୍ରଭାବିତ ହେଲେ ଓ ସେମାନଙ୍କର ସମସ୍ୟା ସମାଧାନ କଲେ । କିନ୍ତୁ ଯେତେବେଳେ ଜଗବନ୍ଧୁ ଗ୍ରାମକୁ ଫେରି ଆସିବା ପାଇଁ ଅନୁରୋଧ କଲା, ସେତେବେଳେ ତନ୍ମୟଦାସ ରାଜ ଦରବାରରେ ରହିବା ପାଇଁ ନିଷ୍ପତ୍ତି ନେଲେ ଓ ତା'ର ଅନୁରୋଧ ଟାଳିଦେଲେ । ତା'ଙ୍କର ଏପରି ଆଚରଣରୁ ମୋର ମନେ ହେଉଛି, ସେ ଜଣେ ସ୍ୱାର୍ଥପର ଲୋକ । ବିଳାସ ବ୍ୟସନରେ ଓ ରାଜକୀୟ ମର୍ଯ୍ୟାଦାରେ ଦିନ ବିତାଇବା ପାଇଁ ସେ ଗ୍ରାମବାସୀଙ୍କର ସ୍ନେହ, ସୌହାର୍ଦ୍ଦ୍ୟକୁ ଭୁଲିଗଲେ । ଏପରି ବ୍ୟକ୍ତି ନିକଟରେ ଯେତେ ପ୍ରତିଭା ଥାଉ ନା' କାହିଁକି, ତା'ର ଚିନ୍ତାଧାରା ସ୍ୱାର୍ଥ ଦ୍ୱାରା ବଶୀଭୂତ ହୋଇଛି । ମୋ ସହିତ ତୁମେ ଏକମତ କି ନୁହେଁ ? ମୋର ପ୍ରଶ୍ନର ସମାଧାନ ଜାଣି ମଧ୍ୟ ନୀରବ ରହିଲେ, ତୁମର ମସ୍ତକ ଶତଧା ବିଦୀର୍ଣ୍ଣ ହେବ ।''

ରାଜା ବିକ୍ରମାର୍କ କହିଲେ: ''ସାଧାରଣତଃ କବି ମାନେ କଳ୍ପନା ଓ ଭାବନା ରାଜ୍ୟରେ ବିଚରଣ କରନ୍ତି । ସେମାନଙ୍କର କବିତାର ମୂଲ୍ୟ, ଶ୍ରୋତା ମାନଙ୍କ ଉପରେ ନିର୍ଭର କରେ । ତନ୍ମୟଦାସ ତା'ଙ୍କର କବିତା ଦ୍ୱାରା ଗ୍ରାମବାସୀଙ୍କୁ ମନ୍ତ୍ରମୁଗ୍ଧ କରି ଦେଇଥିଲେ । ତେଣୁ ସେମାନେ ତା'ଙ୍କୁ ଭଲ ପାଉଥିଲେ । ଯେତେବେଳେ ରାଜା ତା'ଙ୍କର କବିତା ଶୁଣିଲେ, ସେ ମଧ୍ୟ ଅଦ୍ଭୁତ ଭାବରେ ପ୍ରଭାବିତ ହେଲେ । ତା'ଙ୍କର କବିତା କେବଳ ତା'ଙ୍କ ଗ୍ରାମବାସୀଙ୍କର ନୁହେଁ, ଦେଶର ସେହି ଅଞ୍ଚଳର ଜନତାଙ୍କର ଉପକାରରେ ଆସିଲା । ଏହି ସତ୍ୟ ଜାଣିବା ପରେ ତନ୍ମୟଦାସ ଚିନ୍ତା କଲେ ଯେ, ତା'ଙ୍କ କବିତା ଦ୍ୱାରା କେବଳ ଗୋଟିଏ ଗ୍ରାମ କାହିଁକି, ସାରା ଦେଶକୁ ସେବା କରିବା ପାଇଁ ସୁଯୋଗ ମିଳିଛି । ତେଣୁ ସେ ରାଜଦରବାରର ପଦବୀ ସ୍ୱୀକାର କଲେ । ଗୋଟିଏ ଗ୍ରାମର ଲୋକଙ୍କର ଆନନ୍ଦ ନୁହେଁ, ସାରା ରାଜ୍ୟର ଜନତାର ସେବା ପାଇଁ ସେ ଏପରି ନିଷ୍ପତ୍ତି ଗ୍ରହଣ କଲେ । ତେଣୁ ପ୍ରକୃତରେ ସେ ସ୍ୱାର୍ଥପର ନୁହଁନ୍ତି, ପରମାର୍ଥୀ ଅଟନ୍ତି ।''

ଏଇପରି ରାଜାଙ୍କର ମୌନ ଭଙ୍ଗ କରିବାରେ ସଫଳ ହୋଇ ଶବ ଓ ଶବସ୍ଥିତ ବେତାଳ ପୁନଶ୍ଚ ବୃକ୍ଷ ଡାଳରେ ଝୁଲି ପଡିଲା ।



Digitized By OdiaPortal.IN

# ଭାରତ ଆବିଷ୍କାର

## ପ୍ରଶ୍ନୋତ୍ତରୀ

ଭାରତର ଐତିହ୍ୟ ହିନ୍ଦୁ ପୌରାଣିକ ଗାଥାର ମୂଳଦୁଆ ଉପରେ ଗଢ଼ି ଉଠିଛି ବୋଲି କୁହାଯାଇପାରେ । ଭାରତର ଶିଶୁମାନେ ରାମାୟଣ, ମହାଭାରତର କାହାଣୀ ସହିତ ଖୁବ୍ ପରିଚିତ । ସେମାନେ ଅଷ୍ଟାଦଶ ପୁରାଣର କାହାଣୀ ମଧ୍ୟ ଶୁଣିଥିବେ । ଏହି ମାସର ପ୍ରଶ୍ନୋତ୍ତରୀ ହିନ୍ଦୁ ପୌରାଣିକ କାହାଣୀ ଉପରେ ଆଧାରିତ । ଏଠାରେ ପ୍ରଦତ୍ତ ହୋଇଥିବା ଘଟଣା, ସ୍ଥାନ ଓ ପାତ୍ରଙ୍କ ସହିତ ତୁମେ କେତେ ପରିଚିତ, ପରୀକ୍ଷା କରିପାର:

୧. ଗୋଟିଏ ଗୋଷ୍ଠୀର ଲୋକମାନେ ଖା'ପିଅ କରନ୍ତି ନାହିଁ କି ନିଦ୍ରା ବା ବିଶ୍ରାମ ଗ୍ରହଣ କରନ୍ତି ନାହିଁ, ତଥାପି କଠୋର ତପସ୍ୟା କରିପାରନ୍ତି । ସେମାନେ କେଉଁ ଗୋଷ୍ଠୀର ?

୨. ହିମାଳୟଙ୍କ ପୁତ୍ରୀ ବା ପର୍ବତ କନ୍ୟା କାହାକୁ କୁହାଯାଏ ? ତା'ଙ୍କର ପର୍ବତ ସହିତ ସମ୍ପର୍କ ଥିବା ଦୁଇଟି ନାମ ଲେଖ ।

୩. ଜଣେ ନାରୀ ତା'ଙ୍କର ପତି, ଯିଏ କି ଋଷି ଅଭିଶାପ ଦେବାରୁ ପଥର ହୋଇ ଯାଇଥିଲେ । ଜଣେ ଦେବପୁରୁଷଙ୍କ ପାଦସ୍ପର୍ଶରେ ସେ ଅଭିଶାପ ମୁକ୍ତ ହୋଇଥିଲେ । ଏହି ଘଟଣାର ତିନଗୋଟି ଚରିତ୍ରଙ୍କ ନାମ କ'ଣ ?

୪. କ୍ଷୀର ସାଗରକୁ ମନ୍ଥନ କଲାରୁ ଅନେକ ଜିନିଷ ବାହାରିଲା । ତନ୍ମଧ୍ୟରେ ଥିଲା ଗୋଟିଏ ହାତୀ, ଯାହା ସ୍ୱର୍ଗର ଅଧିପତି ଇନ୍ଦ୍ରଙ୍କ ବାହନ, ସେଇ ହାତୀର ନାମ କ'ଣ ?

୫. କୃଷ୍ଣଙ୍କର ମାମୁଁ ମଥୁରାଧିପତି କଂସର ପିତାଙ୍କ ନାମ କ'ଣ ?

୬. ସର୍ପର ଲାଞ୍ଜ ଓ ମଣିଷର ମୁଖ ଥିବା ନାଗ ମାନେ ଅର୍ଦ୍ଧ-ଦେବତା ଅଟନ୍ତି । ଏକ ଜ୍ୱଳନ୍ତ ବୁଦା ମଧ୍ୟରୁ ଏପରି ଜଣେ ନାଗ-ଦେବତାଙ୍କୁ ନଳରାଜା ଉଦ୍ଧାର କରିଥିଲେ । ତା'ଙ୍କ ନାମ କ'ଣ ?

୭. ତା'ଙ୍କର ସ୍ୱାମୀ ଥିଲେ ଜନ୍ମାନ୍ଧ । ତେଣୁ ସେ ନିଜର ଚକ୍ଷୁକୁ ଆବୃତ ରଖିଥିଲେ, ଯାହା ଫଳରେ ସ୍ୱାମୀଙ୍କ ଠାରୁ କିଛି ଅଧିକ ସୁଖ ସେ ଉପଭୋଗ କରିବେ ନାହିଁ । କିଏ ସେହି ନାରୀ ?

୮. କେଉଁ ବନସ୍ତରେ ରାମ, ସୀତା ଓ ଲକ୍ଷ୍ମଣ ବନବାସ କାଳ ବିତାଉଥିବା ବେଳେ ରାବଣ ଦ୍ୱାରା ଅପହୃତ ହୋଇଥିଲେ ?

(ଉତ୍ତର ପରବର୍ତ୍ତୀ ସଂଖ୍ୟାରେ)

## ଫେବୃୟାରୀ ମାସର ପ୍ରକାଶିତ ପ୍ରଶ୍ନର ଉତ୍ତର

୧. ଅରୁଣାଚଳ ପ୍ରଦେଶ
୨. ମଧ୍ୟ ପ୍ରଦେଶ
୩. ମଣିପୁର
୪. ବିହାର- 'ବିହାରଣ' ଶବ୍ଦରୁ
୫. ସିମ୍ଲା- ହିମାଚଳ ପ୍ରଦେଶ
୬. କେରଳ
୭. ଚଣ୍ଡୀଗଡ଼-ପଞ୍ଜାବ ଓ ହରିଆନା
୮. ଉତ୍ତର ପ୍ରଦେଶ- ହରଦ୍ୱାର ଓ ଆଲ୍ହାବାଦ

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

# ଭାରତ ଗାଥା

ଏକ ମହାନ ସଭ୍ୟତାର ଝଲକ,
ଯୁଗେ ଯୁଗେ ସତ୍ୟ ପାଇଁ ଏକ ମହାର୍ଘ ଅନ୍ୱେଷଣ

## ୨୬. ରହସ୍ୟମୟ ଭବିଷ୍ୟତର ପ୍ରାକ୍ ଆଭାସ



ସଂଦୀପ, ଚମେଲୀ ଓ ତା'ଙ୍କର ସାଙ୍ଗମାନେ କିମ୍ବଦନ୍ତୀୟ ରାଜା ବିକ୍ରମାଦିତ୍ୟଙ୍କ ପ୍ରଭାବରୁ ସେ ଯାଏଁ ମୁକୁଳି ନ ଥିଲେ । ତା'ପର ରବିବାରରେ ସେମାନେ ଏକାଠି ହେବା ମାତ୍ରେ ସେଇ କଥା ପଡିଲା । ''କି ସାହାସୀ ସତରେ !'' ଚମେଲୀ ମନ୍ତବ୍ୟ ଦେଲା ।

''ସତକଥା ଯେଉଁ ରାଜା ତା'ଙ୍କ ଦରବାରରେ କାଳିଦାସଙ୍କ ସମେତ ନଅଜଣ ବିଖ୍ୟାତ ବିଦ୍ୱାନଙ୍କୁ ଏକାଠି କରିପାରିଥିଲେ, ସେ ନିଜେ କମ୍ ବିଦ୍ୱାନ ହୋଇ ନ ଥିବେ ।'' ତା'ର ସାଙ୍ଗ ଡଲି କହିଲା ।

ଜେଜେ ଦେବନାଥ ହସିଦେଲେ । ''ଆରଥର ଯାହା କହିଥିଲେ, ତା'କୁ ତମେମାନେ ଏତେ ଚଞ୍ଚଳ ଭୁଲିଗଲ ! ଐତିହାସିକ ମାନେ ବିଶ୍ୱାସ କରନ୍ତି ଯେ ସେହି ନଅଜଣ ବିଦ୍ୱାନ ଏକା ସମୟର ଲୋକ ନୁହଁନ୍ତି । କିନ୍ତୁ ଲୋକମାନେ ବିକ୍ରମାଦିତ୍ୟଙ୍କ ବୀରତ୍ୱ ଓ ବିଦ୍ୱତ୍ତା ସମ୍ପର୍କରେ ଏପରି କଳ୍ପନା କରିଥିଲେ ଯେ, ଭାବୁଥିଲେ ତା'ଙ୍କ ପରି ଜଣେ ଅସାଧାରଣ ରାଜାଙ୍କ ଭିନ୍ନ ଆଉ କିଏ ଏପରି ବିଦ୍ୱାନମାନଙ୍କୁ ପୃଷ୍ଠପୋଷକତା ଦେଇପାରେ ?''- ସେ କହିଲେ ।

''କିନ୍ତୁ ସତରେ ଜେଜେ, ପ୍ରଥମ ଶତାବ୍ଦୀରେ ବିକ୍ରମାଦିତ୍ୟ ନାମକ ଜଣେ ରାଜା ଥିଲେ ।''

''ମୁଁ ଯେପରି ତୁମକୁ ଆଉଥରେ କହିଥିଲି, ମୁଁ ବିଶ୍ୱାସ କରେ ଯେ ସେପରି ଜଣେ ଲୋକପ୍ରିୟ ଓ ଶକ୍ତିଶାଳୀ ଶାସକ ଥିବେ । ବିକ୍ରମାଦ୍ଦ ନାମରେ

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN



ଗୋଟିଏ ନୂତନ ସମ୍ବତ୍ସର ଜଣେ ସାଧାରଣ ରାଜାଙ୍କ ନାମରେ ପାଳିତ ହେଉ ନଥିବ । ଆମ ଦେଶରେ ଏବେ ବି ଅନେକ ସେହି ପରମ୍ପରାରେ ବର୍ଷ ଓ ଶତାବ୍ଦୀର ଗଣନା କରନ୍ତି ।'' ପ୍ରଫେସର୍ କହିଲେ ।

''କିନ୍ତୁ ତା'ଙ୍କ ସହିତ ବେତାଳର କାହାଣୀକୁ କିଏ ଯୋଡ଼ିଛି ?'' ଡଲି ପଚାରିଲା ।

''ମୁଁ ଜାଣେ ନାହିଁ । କେହି ଐତିହାସିକ ମଧ ତାହା ଜାଣି ନଥିବେ । ହୁଏତ୍ ତାହା ଏପରି ହୋଇଥିବ: ରାଜା ବିକ୍ରମ ତା'ଙ୍କର ଅସାଧାରଣ ଉପସ୍ଥିତି ବୁଦ୍ଧି, ଶାଣିତ ବିଚାରଶକ୍ତି ଓ ଜ୍ଞାନ ବଳରେ ବହୁ ସମସ୍ୟାର ସମାଧାନ କରି ପାରୁଥିବେ । ତା'ଙ୍କ ସମୟର ଲୋକମାନେ ତା'ଙ୍କର ବିଚାରଦ୍ୱାରା ଖୁବ୍ ପ୍ରଭାବିତ ହୋଇଥିବେ । ସେମାନେ ସମ୍ଭବତଃ ପରିକଳ୍ପନା କରିଥିବେ ଯେ ସେହି ମହାନ ରାଜା କେବଳ ମନୁଷ୍ୟ ମାନଙ୍କର ନୁହେଁ, ବେତାଳ ପରି ଅତିମାନବ ଶକ୍ତି ମାନଙ୍କର ସମସ୍ୟାର ମଧ ସମାଧାନ କରି ପାରିବେ । ସେ ଯେପରି ଢ଼ଙ୍ଗରେ ବେତାଳକୁ କାବୁ କରିଛନ୍ତି, ତାହା ତା'ଙ୍କର ସାହସର ଓ ସେହି ଅବୁଝା ପ୍ରାଣୀର ଦ୍ୱନ୍ଦାତ୍ମକ ପ୍ରଶ୍ନର ଉତ୍ତର ଦେବାରେ ତା'ଙ୍କର ବୁଦ୍ଧିର ପରିଚୟ ଦିଏ ।'' ପ୍ରଫେସର୍ କହିଲେ ।

''ଉଦାହରଣ ସ୍ୱରୂପ ?'' ଡଲି ପଚାରିଲା ।

''କାହିଁକି, ତମେମାନେ ରାଜା ବିକ୍ରମ ଓ ବେତାଳଙ୍କର ବେତାଳ ପଞ୍ଚବିଂଶତି କାହାଣୀ ଶୁଣିନାହଁ କି ?'' ପ୍ରଫେସର୍ ଜାଣିବାକୁ ଚାହିଁଲେ ।

ଜଣା ପଡିଗଲା ଯେ ସଂଦୀପ ଓ ଚମେଲୀକୁ ବାଦ୍ ଦେଲେ ଅନ୍ୟ କେହି ସେହି ସବୁ ଜାଣିନାହାନ୍ତି । କିନ୍ତୁ ସେମାନେ ତା'ଙ୍କର ଅଜ୍ଞତାର ଫାଇଦା ନେବା ପାଇଁ ବେଶ୍ ଚତୁର ହୋଇଗଲେ ଓ ଜେଜେଙ୍କୁ ସେହି କାହାଣୀ ଶୁଣାଇବା ପାଇଁ ଅନୁରୋଧ କଲେ ।

''ଆଚ୍ଛା ମୁଁ ତୁମମାନଙ୍କୁ ଏପରି ଗୋଟିଏ କାହାଣୀ ଶୁଣାଇବି, ଯାହାର ବର୍ତ୍ତମାନର ବିଜ୍ଞାନରେ କେତେକ ଅଗ୍ରଗତି ସହିତ ସମ୍ବନ୍ଧ ରହିଛି ।'' ଏପରି କହି ପ୍ରଫେସର୍ କାହାଣୀ ଆରମ୍ଭ କଲେ ।

ଏକଦା ଧବଳ ନାମକ ଜଣେ ଯୁବକ ବାସ କରୁଥିଲେ । ସେ ଖୁବ୍ ଛୋଟ ଥିବା ସମୟରେ ଜଣେ ଋଷିଙ୍କ ଦ୍ୱାରା ପ୍ରଭାବିତ ହେଲେ ଓ ନିଜେ ଜଣେ ଋଷି ହେବେ ବୋଲି ସ୍ୱପ୍ନ ଦେଖିଲେ । ସେ ପାର୍ଥିବ ଜୀବନଠାରୁ ଦୂରେଇ ଯାଇ ଏକ ଋଷିତୁଲ୍ୟ ଜୀବନଯାପନ ପାଇଁ ଇଚ୍ଛା ପ୍ରକାଶ କଲେ ।

ମାତ୍ର ସେ ଯୁବାବସ୍ଥାରେ ପହଞ୍ଚିବା ପରେ ତା'ଙ୍କର ପିତାମାତା ତା'ଙ୍କୁ ବାଧ୍ୟ କରି ବିବାହ ବନ୍ଧନରେ ଆବଦ୍ଧ କଲେ । ତା'ଙ୍କର ସ୍ତ୍ରୀ ଗୁଣବତୀ ଥିଲେ ଓ ସେମାନେ ସୁଖରେ କାଳ କାଟିଲେ । ଥରେ ତା'ଙ୍କ ସ୍ତ୍ରୀଙ୍କର ବଡଭାଇ ତା'ଙ୍କ ଗୃହକୁ ଆସିଲେ ଓ ଏକ ବିଶେଷ ଉତ୍ସବରେ ଯୋଗ ଦେବା

ଓଡ଼ିଆପୋର୍ଟାଲ.ଇନ



Digitized By OdiaPortal.IN

ପାଇଁ ନିଜ ଗୃହକୁ ନିମନ୍ତ୍ରଣ କଲେ । ତିନିହେଁ ଏକ ବନସ୍ତ ମଧ୍ୟ ଦେଇ ଯାତ୍ରା କଲେ । ଗୋଟିଏ ଘଣ୍ଟା ଚାଲିବା ପରେ ଯୁବତୀ ଜଣକ କ୍ଲାନ୍ତ ହୋଇ ପଡିଲେ, ତେଣୁ ସେମାନେ ଗୋଟିଏ ବୃକ୍ଷ ତଳେ ବିଶ୍ରାମ ନେଲେ ।

ଧବଳଙ୍କର ଆଖି ଗୋଟିଏ ଜରାଜୀର୍ଣ୍ଣ ମନ୍ଦିର ଉପରେ ପଡିଲା । କୌତୁହଳ ବଶତଃ ସେ ତା' ଭିତରକୁ ଗଲେ । ସେହି ମନ୍ଦିର ଭିତରେ ଜଣେ ଦେବୀଙ୍କ ପ୍ରତିମା ଥିଲା ଓ ବାତାବରଣରେ ଥିଲା ଅଲୌକିକ ନୀରବତା । ସେହି ଶାନ୍ତ ଶୂନ୍ୟତା ଧବଳଙ୍କୁ ହଠାତ୍ ମନେ ପକାଇଦେଲା ତା'ଙ୍କର ସନ୍ନ୍ୟାସୀ ଜୀବନ ପାଇଁ ଥିବା ପ୍ରତିଜ୍ଞା । ସେ ଅନୁତାପରେ ଭାଙ୍ଗି ପଡିଲେ । ଈଶ୍ୱରଙ୍କୁ ଉପାସନା ନ କରି ଜଣେ ସାଧାରଣ ମନୁଷ୍ୟର ଜୀବନ ବଞ୍ଚିବାରେ ଲାଭ କ'ଣ ? ଏହି ହତାଶାରେ ସେ ଅକଳ୍ପନୀୟ କାଣ୍ଡ କରି ବସିଲେ । ଦେବୀଙ୍କ ହାତରୁ ଖଡ୍‌ଗ ଟାଣି ଆଣି ସେ ନିଜକୁ ମସ୍ତକହୀନ କଲେ ।

କିଛି ସମୟ ପରେ ତା'ଙ୍କର ଶାଳକ ତା'ଙ୍କୁ ଡାକି ଡାକି ମନ୍ଦିର ମଧ୍ୟକୁ ପ୍ରବେଶ କଲେ । ଏପରି ଦୃଶ୍ୟ ଦେଖି ସେ ସ୍ତମ୍ଭିତ ହୋଇଗଲେ । ସେ ତା'ଙ୍କ ଭଉଣୀଙ୍କୁ କିପରି ମୁହଁ ଦେଖାଇବେ ? କିଂକର୍ତ୍ତବ୍ୟ ବିମୂଢ଼ ହୋଇ ଧବଳଙ୍କ ପରି ସେ ମଧ୍ୟ ନିଜର ଶିର ଛେଦନ କଲେ ।

ଗୋଟିଏ ଘଣ୍ଟା ବିତିଗଲା ଓ ଗୋଧୂଳି ଉପଗତ ହେବାର ସମୟ ଆସିଲା । ଘଟଣା କ'ଣ ଜାଣିବା ପାଇଁ ସେହି ଯୁବତୀ ମନ୍ଦିର ମଧ୍ୟକୁ ପ୍ରବେଶ କଲେ । ସେ ଯାହା ଦେଖିଲେ, ତାହା ତା'ଙ୍କ ପାଇଁ ଥିଲା ହୃଦୟବିଦାରକ । ଏପରି ଅବସ୍ଥାରେ ପତି ଓ ଭାଇଙ୍କୁ ହରାଇ ସେ ବା କାହିଁକି ଜୀବନ ରଖିବେ, ଏହାଭାବି ସେ ନିଜକୁ ବଧ କରିବା ପାଇଁ ଖଡ୍ଗ ଉଠାଇଲେ ।

ଏତିକିବେଳେ ତା'ଙ୍କୁ ଏକ ସ୍ୱର ଶୁଭିଲା । ସେ



ଜାଣି ପାରିଲେ ଯେ ଏହା ଦେବୀ ପ୍ରତିମା ମଧ୍ୟରୁ ବାହାରୁଛି । "ପାର୍ଥିବ ଜଗତ ପ୍ରତି ମୋହ ତ୍ୟାଗ ନ କରି ସନ୍ନ୍ୟାସୀର ଜୀବନ ବଞ୍ଚିବା ପାଇଁ ଇଚ୍ଛା କରିବା, ତୋ'ର ସ୍ୱାମୀଙ୍କର ଏକ ବୃଥା ପ୍ରୟାସ ଥିଲା । ସେହିପରି, ତୋ ସ୍ୱାମୀଙ୍କ ଅବସ୍ଥା ଦେଖି ନିଜେ କାଣ୍ଡ କରି ବସିବା ଥିଲା ତୋ ଭାଇର ଆଉ ଏକ ମୁର୍ଖାମୀ । କିନ୍ତୁ ତୁ ମଧ୍ୟ ସେପରି ଭୁଲ୍ କରିବାକୁ ଯାଉଛୁ !"

"ହେ ମାତା, ସେମାନଙ୍କୁ ହରାଇ ମୁଁ ବଞ୍ଚିବି କିପରି ? ଯିବି କୁଆଡେ ?" ଯୁବତୀ ବିଳାପ କଲେ ।

"ସେମାନଙ୍କର ମୁଣ୍ଡ ସହିତ ଗଣ୍ଡି ଯୋଡି ଦେ ଓ ମୋ ପାଦ ପାଖରେ ଥିବା ପବିତ୍ର ଜଳ ନେଇ ତା'ଙ୍କ ଉପରେ ସିଞ୍ଚି ଦେ । ସେମାନେ ପୁନର୍ବାର ଜୀବନ ପ୍ରାପ୍ତ ହେବେ ।" ନିର୍ଦ୍ଦେଶ ମିଳିଲା ।

ଯୁବତୀ ତାହାହିଁ କଲେ । ତା'ପରେ ଦୁଇ ଯୁବକ

ଓଡ଼ିଆପୋର୍ଟାଲ.ଇନ୍



Digitized By OdiaPortal.IN

ଉଠି ବସିଲେ ।

''କି ଆଶ୍ଚର୍ଯ୍ୟର କଥା, ଆମେ ଏପରି ନିର୍ଜନ ସ୍ଥାନରେ ଶୋଇ ପଡିଲେ କିପରି ?'' ଏପରି ବିସ୍ମୟ ପ୍ରକାଶ କରି ଦୁହେଁ ଯାତ୍ରା ଆରମ୍ଭ କଲେ ।

କିଛି ବାଟ ଗଲାପରେ ଯୁବତୀ ଜଣକ ନିଜର ଭୁଲ୍ ବୁଝିପାରିଲେ । ସେ ତା'ଙ୍କ ଭାଇଙ୍କ ଶରୀରରେ ସ୍ୱାମୀଙ୍କ ମୁଣ୍ଡ ଓ ସ୍ୱାମୀଙ୍କ ଶରୀରେ ଭାଇଙ୍କ ମୁଣ୍ଡ ଯୋଡି ଦେଇଛନ୍ତି !

ବେତାଳ ରାଜାଙ୍କୁ କାହାଣୀ ଶୁଣାଇବା ପରେ ତା'ଙ୍କର ମତାମତ ଦାବୀ କରି କହିଲା, ''ହେ ରାଜନ୍ ! ଦୁହିଁଙ୍କ ମଧ୍ୟରୁ କାହାକୁ ସେହି ଯୁବତୀ ନିଜର ସ୍ୱାମୀ ଭାବେ ଗ୍ରହଣ କରିବେ ?''

ତୁରନ୍ତ ରାଜା ଉତ୍ତର ଦେଲେ, ''ଯେଉଁ ଶରୀରରେ ତା'ର ସ୍ୱାମୀଙ୍କ ମସ୍ତକ ଯୁକ୍ତ ହୋଇଛି କାରଣ ମସ୍ତକ ହିଁ ଜଣକ ବ୍ୟକ୍ତିତ୍ୱର ପରିଚୟ !''

ପ୍ରଫେସର୍ କାହାଣୀ ଶେଷ କରିବାରୁ ସେହି କ୍ଷୁଦ୍ର ଶ୍ରୋତା ମଣ୍ଡଳୀ ମନ୍ତବ୍ୟ ଦେଲେ, ''ଚମ୍ତକାର ! ଅଦ୍‌ଭୁତ !''

''ଏହା ତ' ଚମ୍ତକାର, କିନ୍ତୁ ଏହି କାହାଣୀ ସହିତ ଆମର ବର୍ତ୍ତମାନ ସମୟର କିପରି ସମ୍ପର୍କ ଅଛି ସେ କଥା ତ' ଆରମ୍ଭ ହୋଇନି । ସେ କଥା କ'ଣ ?'' ପ୍ରଫେସର୍ ପଚାରିଲେ ।

ପିଲାମାନେ ହଠାତ୍ କିଛି ଭାବି ପାରିଲେ ନାହିଁ । ସଂଦୀପ କହିଲା, ''ଜେଜେ କିଛି ମାସ ତଳେ ମୃତ୍ୟୁ ବରଣ କରିଥିବା କ୍ରିଷ୍ଟିଆନ୍ ବର୍ଣ୍ଣାଡ୍‌ଙ୍କ ସହିତ ଏହା ସମ୍ବନ୍ଧିତ ନୁହେଁ କି ?''

''ଠିକ୍ କଥା । ପ୍ରାୟ ଚାଳିଶ ବର୍ଷ ତଳେ ଡକ୍ଟର୍ ବର୍ଣ୍ଣାଡ୍ ଜଣେ ମନୁଷ୍ୟ ଶରୀରରେ ଆଉ ଜଣଙ୍କର ହୃଦୟ ପ୍ରତିରୋପଣ କରିଥିଲେ । ଏହା ଅନେକ ଚାଞ୍ଚଲ୍ୟ ଖେଳାଇଥିଲା । କେତେକ ଅନୁମାନ କରୁଥିଲେ ମସ୍ତକର ପ୍ରତିରୋପଣ ସମ୍ଭବ କି ? ଯଦି ଏପରି ହୁଏ, ତେବେ ଶରୀରର ପରିଚୟରେ ଅଥବା ମସ୍ତକର ପରିଚୟରେ ବ୍ୟକ୍ତି ପରିଚିତ ହେବ, ଏପରି ପ୍ରଶ୍ନ ଉଠିବ । ଅବଶ୍ୟ ରାଜା ବିକ୍ରମ ଏହାର ଯଥୋଚିତ ଉତ୍ତର ଦେଇ ସାରିଛନ୍ତି ।''

''ବାସ୍ତବିକ !'' ପିଲାଏ ଏକମତ ହେଲେ ।

(- ବିଶ୍ୱାବସୁ)





ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

## ଆକବରଙ୍କ ରହସ୍ୟ

ସମ୍ରାଟ ଆକବରଙ୍କ ଚର୍ମର ଉଜ୍ଜ୍ୱଳତାର ରହସ୍ୟ ଅନୁମାନ କରିପାରିବ କି ? *ଆକବରିନାମା* ରେ ଉଲ୍ଲେଖ ଅଛି ଯେ ଲୋନାର ହ୍ରଦର ଜଳରେ ପ୍ରସ୍ତୁତ ଏକ ପ୍ରକାର ସାବୁନ ସେ ବ୍ୟବହାର



କରୁଥିଲେ । ମହାରାଷ୍ଟ୍ରର ଔରଙ୍ଗାବାଦ ନିକଟରେ ଥିବା ଲୋନାର ହ୍ରଦର ଜଳରେ ଅସାଧାରଣ ଔଷଧୀୟ ଓ ଆରୋଗ୍ୟ ଶକ୍ତି ଥିବାର ବିଶ୍ୱାସ କରାଯାଏ । ନିୟୁତାଧିକ ବର୍ଷ ତଳେ ଗୋଟିଏ ମହାକାଶୀୟ ପିଣ୍ଡ ଏଠାରେ ଖସି ପଡିଥିଲା ଓ ତା'ର ଆଘାତରୁ ହ୍ରଦର ସୃଷ୍ଟି । ଏହାର ଜଳ କ୍ଷାରଗୁଣଯୁକ୍ତ ଓ ଅନେକ ପ୍ରକାରର ପ୍ରାଣୀ ଏଠାରେ ବଞ୍ଚି ପାରନ୍ତି ନାହିଁ ।

## ପ୍ରତିଭା ପୂଜା

ପ୍ରତିଭା ପୂଜାର ଏହା ଏକ ଉଦାହରଣ । ମହାରାଷ୍ଟ୍ରର କୋଙ୍କଣ ଉପତ୍ୟକାର ସିନ୍ଧୁଦୁର୍ଗର ଏହି ମନ୍ଦିରରେ ଜଣେ ପ୍ରସିଦ୍ଧ ବୀରଙ୍କୁ ପୂଜା କରାଯାଏ । ସେ ହେଉଛନ୍ତି ମରଠାବୀର ଛତ୍ରପତି ଶିବାଜୀ । ଶିବାଜୀଙ୍କର ପ୍ରସ୍ତର ପ୍ରତିମାରେ ଏକ ବିରାଟ ଧାତୁର ମୁଖାକୁ ଏଠାରେ ପୂଜା କରାଯାଏ । ପ୍ରତିମାଙ୍କ ହସ୍ତରେ ଥିବା ଦୁଇଧାର ବିଶିଷ୍ଟ ଖଡ୍ଗ, ମରଠାବୀର ବ୍ୟବହାର କରୁଥିଲେ ବୋଲି ଶୁଣାଯାଏ । ଶିବାଜୀଙ୍କ ବାହିନୀରେ କାମ କରୁଥିବା ଲୋକମାନଙ୍କର ବଂଶଧର ମାନେ ଏବେ ମଧ୍ୟ ସିନ୍ଧୁଦୁର୍ଗରେ ବାସ କରୁଛନ୍ତି ।





ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

# ମାତୃ ଶକ୍ତି

ନୀଲଗିରୀ ପାର୍ବତ୍ୟ ଅଞ୍ଚଳରେ ଥଣ୍ଡା, କାଲୁଆ ଭାଗରେ ଗୋଟିଏ ଅଳ୍ପ ଜଣାଶୁଣା ଜନଜାତି- ଟୋଡାସ୍ ସଂପ୍ରଦାୟର ଲୋକେ ବାସ କରନ୍ତି । ସେମାନେ ଛୋଟ ଛୋଟ ଦଳ ବା 'ମୁଣ୍ଡ'ରେ ବିଭକ୍ତ ହୋଇ ରହିଛନ୍ତ । ଟୋଡାସ୍ ମାନଙ୍କର ସାମାଜିକ ବ୍ୟବସ୍ଥା ରହିଛି ଓ ସେମାନେ



କେତେକ ନୀତି ନିୟମ କଠୋର ଭାବେ ପାଳନ କରନ୍ତି । ଗୋଟିଏ ନିୟମରେ, ଟୋଡାସ୍ ମହିଳାମାନେ ମନ୍ଦିର ମଧ୍ୟକୁ ପ୍ରବେଶ କରି ପାରିବେ ନାହିଁ । ବାସ୍ତବରେ, ପାରମ୍ପରିକ ଭାବରେ ମହିଳା ମାନଙ୍କ ପାଇଁ ମନ୍ଦିରର କିଛି ଦୂରରେ ବାରଣ ଦ୍ୱାର ଥାଏ ଓ ସେଠାରୁ ଆଉ ଭିତରକୁ, ଯିବାକୁ ଅନୁମତି ମିଳେ ନାହିଁ । ଆଉ ଟୋଡାସ୍ ମାନେ କାହାକୁ ପୂଜା କରନ୍ତି ଜାଣ ? 'ତେକାୟ' ନାମକ ଜଣେ ଦେବୀଙ୍କୁ !

# ରାଜକୀୟ ରଙ୍ଗ !

ଯଦି ତୁମେ ଜଣେ ରାଜା ହୋଇଥାଆନ୍ତ, ତେବେ କିପରି ହୋଲି ଖେଳିଥାଆନ୍ତ ? ତୁମର ସେହି ବର୍ଣ୍ଣାଢ଼୍ୟ ରାଜପ୍ରାସାଦର କାନ୍ଥ ଓ ଚଟାଣକୁ ରଙ୍ଗ ପକାଇ ଅପରିଷ୍କାର କରି ପାରନ୍ତ କି ? ତେବେ ହୋଲି ଖେଳିବା ପାଇଁ ତୁମେ ପ୍ରାସାଦରୁ ବାହାରକୁ ବାହାରି ଆସ କିମ୍ବା ପ୍ରାସାଦର ବିଭିନ୍ନ ସ୍ଥାନରେ ଥିବା ବାଲ୍‌କୋନୀରୁ ରଙ୍ଗ ବର୍ଷା କରି ସାଥୀମାନଙ୍କୁ ଓଦା କରିଦିଅ । ଜୟପୁରର ରାଜା ଓ ରାଣୀମାନେ ପାରମ୍ପରିକ ରୀତିରେ ଏପରି ହୋଲି ଖେଳୁଥିଲେ ।

ଐତିହାସିକ ତଥ୍ୟ ଅନୁସାରେ, ରାଜା ଗୋଟିଏ



ଓଡ଼ିଆପୋର୍ଟାଲ.ଇନ୍



Digitized By OdiaPortal.IN

ହାତୀ ଉପରେ ବସି ହାଓ୍ୱା ମହଲର ବିଭିନ୍ନ ବାଲକୋନୀ ଓ ଅନ୍ୟ ସ୍ଥାନ ପାଖକୁ ଆସନ୍ତି । ତା'ଙ୍କ ଚାରିପାଖରେ ଅନେକ ଅନୁଚର ରଙ୍ଗ ଓ ଅବିରରେ ପୂର୍ଣ୍ଣ କରି ପେଣ୍ଡୁ ମାନ ଧରିଥାନ୍ତି । ରାଜା, ରାଣୀ ଓ ପରିବାରର ଅନ୍ୟ ସଦସ୍ୟଙ୍କ ଉପରକୁ ସେହି ପେଣ୍ଡୁ ନିକ୍ଷେପ କରନ୍ତି । ପ୍ରତିବଦଳରେ ମହିଳାମାନେ ଉପରୁ ଛୋଟ ଛୋଟ ପିଚକାରୀରେ ରଙ୍ଗ ପକାଇ ରାଜାଙ୍କୁ ଓଦା କରିଦିଅନ୍ତି ।

# ନଡ଼ିଆରେ ବଢ଼ିଆ ଖେଳ

ଚଉଦ ଜଣ ଲୋକ ଗୋଟିଏ ନଡ଼ିଆ ପଛରେ ଧାଁ ଦୌଡ଼ କରୁଥିବାର ଦେଖିଲେ ତୁମେ କ'ଣ ଭାବିବ ? ଭାବିବ ଯେ, ସେଇ ନଡ଼ିଆର ଏପରି କ'ଣ ବିଶେଷତ୍ୱ ଅଛି, ଯେଉଁଥିପାଇଁ ଏତେ ଲୋକ ତା' ପଛରେ ଗୋଡ଼ାଇଛନ୍ତି । କିନ୍ତୁ ସେମାନେ 'ୟୁବି ଲାକ୍‌ପି' ଖେଳି ଥାଉ ପାରନ୍ତି । ଏହା ହେଉଛି ମଣିପୁରର ଏକ ଲୋକପ୍ରିୟ ଖେଳ । ଏହା ଏକ ପ୍ରକାର ରଗ୍‌ବି (ନା', ଗୋଡରେ ନୁହେଁ, ଏହା ଫୁଟ୍‌ବଲ ନୁହେଁ), ଯାହା ଦଶ ଜଣରୁ ଚୌଦ ଜଣ ଏକା ସାଂଗରେ ଖେଳିପାରିବେ ।

'ୟୁବି ଲାକ୍‌ପି' ଗୋଟିଏ ପଡ଼ିଆରେ ଖେଳାଯାଏ । ପଡ଼ିଆର ଶେଷ ଭାଗରେ ଗୋଟିଏ କୋଠରୀ ଥାଏ । ପେଣ୍ଡୁ, ଯାହା ଏକ ତୈଳଯୁକ୍ତ ହୋଇଥିବା ନଡ଼ିଆ, ଜଣକ ପାଖରୁ ଆଉ ଜଣକ ପାଖକୁ ଫିଙ୍ଗାଯାଏ, ଯିଏ କୋଠରୀ ଭିତରକୁ ନଡ଼ିଆ ପକାଇ ଦେଇପାରେ ସେ ବିଜୟୀ ଘୋଷିତ ହୁଏ । ଆଉ ଖେଳରେ ଯଦି ଉତ୍ତେଜନା ବଢ଼ିଯାଏ ବା ଠେଲାପେଲା ଚାଲେ, ତେବେ ଖେଳାଳୀଙ୍କ ଉପରେ ଥଣ୍ଡାପାଣି ପକାଯାଇ ସେମାନଙ୍କୁ ଅଲଗା କରାଯାଏ !




'ୟୁବି ଲାକ୍‌ପି' ଖେଳିବା ପାଇଁ ଦଳ ଗଠନ କରିବା ?




ଓଡ଼ିଆପୋର୍ଟାଲ.ଇନ
Digitized By OdiaPortal.IN

# ଚତୁର ଗୋପାଳ ଭାଣ୍ଡ



ଗୋପାଳ ଭାଣ୍ଡଙ୍କ ପିତାଙ୍କର ପ୍ରଥମ ମୃତ୍ୟୁବାର୍ଷିକୀ ଶ୍ରାଦ୍ଧ ଦେବାର ଥାଏ । ବହୁ ଦୂରରୁ ଡଙ୍ଗାରେ ବସି ତା'ଙ୍କୁ ଘରକୁ ଆସିବାକୁ ପଡିଲା । ''ଜୋର୍‌ରେ ଆହୁଲା ମାର, ଲଗ୍ନ ଗଡିଯିବ ପରା !''- ସେ ନାଉରିଆକୁ ତାଗିଦ୍ କଲେ ।



ପୁରୋହିତ ତା'ଙ୍କ ପିତାଙ୍କ ଆତ୍ମାର ଶାନ୍ତି ନିମନ୍ତେ ଶ୍ଳୋକ ପାଠ କଲେ । ହଠାତ୍ ସେ ଶ୍ଳୋକପାଠ ବନ୍ଦ କରି କହିଲେ, ''ତୁମ ବାପା ମୋ ଠାରୁ ଶହେ ଟଙ୍କା ଧାର୍ ନେଇଥିଲେ । ଏବେ ସାଙ୍ଗେ ସାଙ୍ଗେ ମୋ ଟଙ୍କା ଫେରାଅ । ନଚେତ୍ ଶ୍ରାଦ୍ଧକର୍ମ ଅଧାରେ ରହିଲା ।'' ସେ ଧମକ ଦେଲେ ।



ଗୋପାଳ ବଡ ଅଡୁଆରେ ପଡିଲେ । ଯାହା ହେଉ ପଛକେ, ସେ ଲଗ୍ନବେଳ ଗଡିଯିବା ଚାହୁଁ ନ ଥିଲେ । ''କାଲି ସକାଳକୁ ନିଶ୍ଚୟ ମୁଁ ଆପଣଙ୍କ ଦୁଆରମୁହଁରେ ଟଙ୍କା ମିଳିବାର ବ୍ୟବସ୍ଥା କରିଦେବି । କର୍ମଟି ପୂରା କରିବା ହୁଅନ୍ତୁ, ମହାଶୟ !- ଗୋପାଳ ଅନୁରୋଧ କଲେ ।

ସେଇଟି ପଣସ ପାଚିବାର ଋତୁ । କାମ ସରିବା ପରେ ଗୋପାଳ ପଣସ ମଞ୍ଜି ସଂଗ୍ରହରେ ଲାଗି ପଡିଲେ । ଗୋଟିଏ ବସ୍ତା ପଣସ ମଞ୍ଜି ଏକାଠି କରି ଗୋଟିଏ ବସ୍ତାରେ ବାନ୍ଧିଲେ । ''ମୁଁ ତା'ଙ୍କୁ କହିଥିଲି, ଆପଣଙ୍କ ଦୁଆର ମୁହଁରେ..... ଠିକ୍ ଅଛି, ସେ ତା'ଙ୍କ ଦୁଆରମୁହଁରୁ ... ନେ ଚିନ୍ତା କଲେ ।



Digitized By OdiaPortal.IN
ଓଡ଼ିଆପୋର୍ଟାଲ.ଇନ



ଗଭୀର ରାତ୍ରିରେ ଗୋପାଳ ପୁରୋହିତଙ୍କ ଘରକୁ ଗଲେ ଓ ତା'ଙ୍କ ଦୁଆର ସାମ୍ନାରେ ଧାଡି କରି ପଣସ ମଞ୍ଜି ପୋତି ଚାଲିଲେ । ସକାଳ ବେଳକୁ ତା'ଙ୍କ କାମ ସରି ଯାଇଥିଲା ଓ ସେ ପୁରୋହିତଙ୍କୁ ଅପେକ୍ଷା କଲେ ।



ଦାଣ୍ଡ ଦୁଆର ଖୋଲିଲା । ପୁରୋହିତ ଘରୁ ବାହାରି ଆସିବା ବେଳକୁ ଦେଖିଲେ ଯେ ଗୋପାଳ ମଞ୍ଜି ପୋତି ସାରି ମାଟି ଦେଉଛି । ''ତୁମେ ଏଠାରେ କ'ଣ କରୁଛ, ଗୋପାଳ ?'' ଆଖି ମଳି ମଳି ପୁରୋହିତ ପଚାରିଲେ ।



''ମୋର ସ୍ୱର୍ଗୀୟ ପିତା ଆପଣଙ୍କ ପାଖରୁ ଯେଉଁ ଧାର ନେଇଥିଲେ, ମୁଁ ତାହା ଫେରାଇବାକୁ କଥା ଦେଇ ଥିଲି କି ନାହିଁ ? କଥା ରଖି ମୁଁ ଏଠାରେ ଆପଣଙ୍କ ଦୁଆରର ଚାରିଆଡେ ପଣସ ମଞ୍ଜି ପୋତୁଛି...'' ଗୋପାଳ କଥା ସରି ନ ଥିଲା ।



''କିନ୍ତୁ ପଣସ ମଞ୍ଜି ତ ଟଙ୍କା ନୁହେଁ ?'' ପୁରୋହିତ ପ୍ରତିବାଦ କଲେ । ''ଆଜ୍ଞା, ଯେତେବେଳେ ମଞ୍ଜିରୁ ଗଛ ହୋଇଯିବ, ଆପଣ ବିକ୍ରୀ କରି ବହୁତ ଟଙ୍କା ପାଇବେ ।'' ''ଆପଣଙ୍କ ଦୁଆର ମୁହଁରୁ ଟଙ୍କା ପାଇବେ ବୋଲି ମୁଁ କହି ନ ଥିଲି ଆଜ୍ଞା !'' ତା'ଙ୍କର ଯୁକ୍ତିରେ [illegible] ।

Digitized By OdiaPortal.IN

ଓଡ଼ିଆପୋର୍ଟାଲ.ଇନ

# ହୋଲି

ଶୀତର ସମାପ୍ତି ଓ ବସନ୍ତର ଆଗମନର ସୂଚନା ବହନ କରିଥାଏ ରଙ୍ଗର ମହୋତ୍ସବ ହୋଲି । ହିନ୍ଦୁ ପଞ୍ଜିକା ଅନୁସାରେ ଫାଲ୍ଗୁନ ମାସର ପୂର୍ଣ୍ଣିମା ତିଥିରେ ହୋଲି ପାଳିତ ହୁଏ । ଗ୍ରେଗୋରିଆନ୍ କ୍ୟାଲେଣ୍ଡର ମତରେ ଏହା ମାର୍ଚ୍ଚ ମାସରେ ପଡିଥାଏ ।

ଶୀତଋତୁର ଶେଷ ବେଳକୁ, ଫସଲ ଅମଳ କାମ ସରି ଆସିଥାଏ, ଗଛ ଲତାରେ ନୂତନ ପତ୍ର କଅଁଳି ଆସିଥାଏ । ଏପରି ଏକ ଉଲ୍ଲାସ ମୟ, ପ୍ରାକୃତିକ ପରିବେଶରେ ଆନନ୍ଦର ପର୍ବ ହୋଲି ପାଳିତ ହୁଏ । ଏହା ଏକ ତିନିଦିନିଆ ପର୍ବ । ହୋଲି କୁ ଭାରତର ସବୁଠାରୁ ବର୍ଣ୍ଣାଢ୍ୟ ଓ ମନୋରମ ପର୍ବ ଭାବେ ବିଚାର କରାଯାଏ । ଶିଶୁଙ୍କଠାରୁ ବୃଦ୍ଧଯାଏଁ ସମସ୍ତେ ଅବିର ରଙ୍ଗରେ ରଙ୍ଗୀନ ହୋଇଯାନ୍ତି ।



ସେମାନେ ଗୋଟିଏ ପିଚକାରୀରେ ପରସ୍ପର ଉପରକୁ ରଙ୍ଗପାଣି ପକାନ୍ତି । ଏହା ପାରମ୍ପରିକ ଉପାୟରେ ନିର୍ମିତ ପିଚକାରୀ କିମ୍ବା ବେଲୁନ ମଧ୍ୟ ହୋଇପାରେ । ଏହି ଉତ୍ସବକୁ ଅଧିକ ଆନନ୍ଦ ମୁଖର କରିଥାଏ- ନୃତ୍ୟ, ଗୀତ ଓ ମିଷ୍ଟାନ୍ନ ବଣ୍ଟନ । ଏହି ଅବସରରେ 'ଗୁଜିଆ' ପରି ପାରମ୍ପରିକ ମିଷ୍ଟାନ୍ନ ପ୍ରସ୍ତୁତ ହୁଏ ଓ ବୟସ୍କ ଲୋକମାନେ ଏକ ପ୍ରକାର ପାନୀୟ 'ଭାଇଁ' ପାନ କରନ୍ତି ।

ଉତ୍ତର ଭାରତରେ ହୋଲି ଅତ୍ୟନ୍ତ ଉତ୍ସାହରେ ପାଳିତ ହୁଏ । ହୋଲିରେ ଲୋକମାନେ ଗୋଟିଏ ସ୍ଥାନରେ ଏକତ୍ରିତ ହୋଇ ଶୀତଋତୁରେ ଝଡି ପଡିଥିବା ଶୁଖିଲା ପତ୍ରକୁ ଏକାଠି କରି ନିଆଁ ଜଳାନ୍ତି ।

ଅନ୍ୟାନ୍ୟ ପର୍ବ ମାନଙ୍କ ପରି ହୋଲି 'ଅମଙ୍ଗଳ ଉପରେ ମଙ୍ଗଳର ବିଜୟ' ଘୋଷଣା କରେ । ଏହି ପର୍ବ ସହିତ ଅନେକ କାହାଣୀ, କିମ୍ବଦନ୍ତୀ ଜଡିତ ଅଛି ।

ବିଶ୍ୱାସ କରାଯାଏ ଯେ ଶ୍ରୀକୃଷ୍ଣଙ୍କର ମାମୁଁ କଂସ, ସେ ଶିଶୁ ଥିବା ବେଳେ ପୁତନା ନାମକ ଜଣେ ରାକ୍ଷସୀକୁ ତା'ଙ୍କୁ ମାରିବାକୁ ପଠାଇଥିଲେ । ପୁତନା ଗୋଟିଏ ସୁନ୍ଦରୀ ସ୍ତ୍ରୀର ରୂପ ଧାରଣ କରି ଶ୍ରୀକୃଷ୍ଣଙ୍କ ଗୃହକୁ ଆସିଲା । ସେ ଯେତେବେଳେ

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN



ହୋଲି ସହିତ ସମ୍ବନ୍ଧିତ, ଆଉ ଏକ ଜଣାଶୁଣା କିମ୍ବଦନ୍ତୀ ହେଉଛି ହୋଲିକା । ରାକ୍ଷସ ରାଜା ହିରଣ୍ୟକଶ୍ୟପର ଭଉଣୀ ହେଉଛି ହୋଲିକା । ହିରଣ୍ୟକଶ୍ୟପର ପୁତ୍ର ପ୍ରହ୍ଲାଦ ଜଣେ ବିଷ୍ଣୁଭକ୍ତ । ପିତା ତା'ଙ୍କର ବିଷ୍ଣୁଭକ୍ତିକୁ ପସନ୍ଦ କରୁ ନ ଥିଲେ । ତେଣୁ ତା'ଙ୍କୁ ମାରିବା ପାଇଁ ଅନେକ ଉପାୟ କରୁଥିଲେ । କିନ୍ତୁ ବାରମ୍ବାର ବିଫଳ ହେଉଥିଲେ ।

ହୋଲିକାର ଏକ ବିଶେଷ ଶକ୍ତି ଥିଲା । ଯାହା ଫଳରେ ସେ ଅଗ୍ନି ଦ୍ୱାରା ଦଗ୍ଧ ହେବନାହିଁ । ତେଣୁ ଦିନେ ସେ ପ୍ରହ୍ଲାଦକୁ କୋଳରେ ଧରି ଅଗ୍ନି ମଧ୍ୟକୁ ପ୍ରବେଶକଲା । କିନ୍ତୁ ଅଗ୍ନି ପ୍ରହ୍ଲାଦଙ୍କର ସାମାନ୍ୟ କ୍ଷତି ନ କରି ହୋଲିକାକୁ ଗ୍ରାସକଲେ । ଏହିପରି ଅଧର୍ମ ଉପରେ ଧର୍ମର ବିଜୟ ଘଟିଲା ।

ଭିତରକୁ ଯାଇ ଦୁଗ୍ଧପାନ ଆଳରେ ବିଷ ଦେବାକୁ ଚେଷ୍ଟା କଲା, ଶ୍ରୀକୃଷ୍ଣ ତା'ର ଜୀବନ ଶୋଷି ଆଣିଲେ ।

ହୋଲିର ପୂର୍ବଦିନ ରାତ୍ରିରେ ପୁତନାର ଗୋଟିଏ ବଡ ପୁତୁଳିକାକୁ ନିଆଁରେ ପୋଡାଯାଏ । ଏବେ ମଧ୍ୟ କୃଷ୍ଣଙ୍କର ଜନ୍ମସ୍ଥଳୀ ମଥୁରାରେ, ଏହି ପ୍ରକାରେ ହୋଲି ପାଳିତ ହୁଏ । ବିଶ୍ୱାସ କରାଯାଏ ବସନ୍ତ ଉତ୍ସବ କାଳରେ ଗୋପାଙ୍ଗନା ମାନେ କୃଷ୍ଣଙ୍କ ସହିତ ନୃତ୍ୟ କରୁଥିଲେ । ହୋଲି ମୁଖ୍ୟତଃ କୃଷ୍ଣଙ୍କ ରାସଲୀଳା ଉପରେ ଆଧାରିତ । ମଥୁରାର ହୋଲି ଅନ୍ୟତମ ମୁଖ୍ୟ ଆକର୍ଷଣ ହେଉଛି ଏକ ପ୍ରକାର ମାଟିପାତ୍ର ମଟ୍‌କା ଭାଙ୍ଗିବା । କୃଷ୍ଣ ଶିଶୁଥିବା ବେଳେ ଲହୁଣୀ ଖାଇବାକୁ ଖୁବ୍ ଭଲ ପାଉଥିଲେ ଓ ବେଳେବେଳେ ତା'ଙ୍କ ସଖା ମାନଙ୍କ କାନ୍ଧରେ ଚଢ଼ି ଉପରେ ଝୁଲୁଥିବା ଦହି ଓ ଲହୁଣୀ ନେଇ ଆସୁଥିଲେ ।

## ହୋଲି ପାଇଁ କେତୋଟି ସୂଚନା

- ✓ ରଙ୍ଗ ଖେଳିବା ବେଳେ ପୁରୁଣା ପୋଷାକ ପିନ୍ଧ ।
- ✓ ଆଖିରେ ଯେପରି କୌଣସି ରଙ୍ଗଗୁଣ୍ଡ ନ ପଡେ, ସର୍ତକ ରୁହ ।
- ✓ ଯଦି ଆଖିରେ ସେପରି କିଛି ପଡିଯାଏ, ତୁରନ୍ତ ପାଣିରେ ଧୋଇ ପକାଅ ।
- ✓ ହୋଲି ଖେଳି ସାରିବା ପରେ ଭଲଭାବେ ପରିଷ୍କାର ହୁଅ ।
- ✓ ବିଶ୍ୱସ୍ତ ଦୋକାନରୁ ଉନ୍ନତ ମାନର ରଙ୍ଗ କିଣ ।
- ✓ ବେଲୁନ୍‌ରେ ରଙ୍ଗପାଣି ପୁରାଇ ଖେଳ ନାହିଁ ।

ଓଡ଼ିଆପୋର୍ଟାଲ.ଇନ

Digitized By OdiaPortal.IN

# ଜାମସେଦ୍‌ଜୀ ନବ୍‌ରୋଜ୍

ପାର୍ସୀମାନଙ୍କ ମଧ୍ୟରୁ ଯେଉଁମାନେ ଫାସିଲ୍ କ୍ୟାଲେଣ୍ଡର ବ୍ୟବହାର କରନ୍ତି, ସେମାନଙ୍କ ପାଇଁ ନବବର୍ଷ ବସନ୍ତ ଋତୁରେ ଆରମ୍ଭ ହୁଏ । ଏହା ମାର୍ଚ୍ଚ ୨୧ରେ, ବସନ୍ତ ଆଗମନ କାଳରେ ପାଳିତହୁଏ । ନବ୍‌ରୋଜ୍‌ର ଆକ୍ଷରିକ ଅର୍ଥ ହେଉଛି- ନୂତନ ଦିବସ ।



ପର୍ସିଆର କିମ୍ବଦନ୍ତୀୟ ଶାସକ ଜାମ୍‌ସେଦ୍‌ଙ୍କ ସମୟରୁ ଏହି ପର୍ବପାଳନ ଆରମ୍ଭ ହୋଇଛି । ସେ ପାର୍ସୀ କ୍ୟାଲେଣ୍ଡରରେ ଶୃଙ୍ଖଳିତ ଭାବେ ସୂର୍ଯ୍ୟଙ୍କର ଚଳନକୁ ପ୍ରୟୋଗ କରିବା ଆରମ୍ଭ କରିଥିଲେ । ଯେଉଁ ଦିନ ସୂର୍ଯ୍ୟ ମେଷ ରାଶିରେ ପ୍ରବେଶ କରନ୍ତି, ସେହିଦିନକୁ ସେମାନେ ନବବର୍ଷର ଆରମ୍ଭ ଭାବେ ହିସାବ କରନ୍ତି । ଆଉ ଏକ ମଜାଦାର ପ୍ରଥା ହେଉଛି ରାଜାଙ୍କୁ ସୁନାରୁପାରେ ଓଜନ କରିବା ଏବଂ ଏହାକୁ ଗରିବଙ୍କ ମଧ୍ୟରେ ବାଣ୍ଟିବା ।

ପର୍ବ ଦିନମାନଙ୍କରେ ପାର୍ସୀମାନେ ନୂତନ ବସ୍ତ୍ର ପିନ୍ଧି ମନ୍ଦିରକୁ ଯାଆନ୍ତି । ପରସ୍ପରକୁ ଭୋଜନ ପାଇଁ ନିମନ୍ତ୍ରଣ କରନ୍ତି । ବଦାନ୍ୟତା ପାର୍ସୀ ମାନଙ୍କର ଏକ ମୌଳିକ ଗୁଣ, ପର୍ବ ଦିନରେ ସେମାନେ ସେହି ଗୁଣକୁ ଆନ୍ତରିକତାର ସହ ଗ୍ରହଣ କରନ୍ତି ।

# ଶୁଭ ଶୁକ୍ରବାର



ବାଣୀ ଅନୁସାରେ ପ୍ରଭୁ ଯୀଶୁଙ୍କ 'ଇଷ୍ଟର ଡେ' ର ପୂର୍ବ ଶୁକ୍ରବାର ଦିନ କ୍ରୁଶବିଦ୍ଧ କରା ଯାଇଥିଲା । ତେଣୁ ଏହି ଦିନଟିକୁ 'ଗୁଡ୍ ଫ୍ରାଇଡେ' ଭାବେ କ୍ରୁଶବିଦ୍ଧ ଘଟଣାର ସ୍ମୃତି ଦିବସ ଭାବେ ପାଳନ କରାଯାଏ ।

ପ୍ରଭୁ ଯୀଶୁ ସେହି ଦିନ ଦିନ ତିନିଟା ବେଳେ କ୍ରୁଶ ଉପରେ ପ୍ରାଣତ୍ୟାଗ କରିଥିଲେ ବୋଲି ବିଶ୍ୱାସ କରାଯାଏ । କ୍ୟାଥଲିକ୍ ଚର୍ଚ୍ଚମାନଙ୍କରେ ସେହି ସମୟରେ କ୍ରୁଶ କାଠ ଉପରୁ ଯୀଶୁଙ୍କର ଶରୀରକୁ ପୃଥକ କରିବାର ବିଧିବିଧାନ ପାଳନ କରାଯାଏ । ଏହି ଦିନ ଚର୍ଚ୍ଚ ମାନଙ୍କରେ ଘଣ୍ଟି ବାଜେ ନାହିଁ ।

ଚର୍ଚ୍ଚରେ କେତେକ ଶୋକ ପାଳନକାରୀ ସବୁ ଶୋଭାଯାତ୍ରାରେ ବାହାରନ୍ତି ଓ ବିଧିବିଧାନର ଶେଷକୃତ୍ୟ ପାଳନ କରନ୍ତି । 'ଶୁଭ ଶୁକ୍ରବାର'ରେ ସବୁ ଖ୍ରୀଷ୍ଟ ଧର୍ମାବଲମ୍ବୀମାନେ ଉପବାସ କରନ୍ତି ।

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

# ମହରମ୍



ମହରମ୍, ପ୍ରଥମ ମୁସ୍‌ଲିମ୍ ମାସ ମହରମର ଦଶମ ଦିବସରେ ପାଳିତ ହୁଏ । ଏହି ଦିନଟି ମହାପୁରୁଷ ମହମ୍ମଦଙ୍କର ନାତି ହୁସେନ୍‌ଙ୍କର ସ୍ମୃତିରେ ଶୋକ ଦିବସ ଭାବେ ପାଳନ କରାଯାଏ ।

ମହମ୍ମଦଙ୍କ ଅନ୍ତେ, ଖଲିଫା ବା ବିଶ୍ୱସ୍ତ ସେନାପତି ପଦବୀରେ ଜଣେ ଉତ୍ତରାଧିକାରୀ ମନୋନୀତ କରିବାକୁ ପଡିଲା । ମହାପୁରୁଷଙ୍କର କେହି ପୁତ୍ର ନ ଥିଲେ କିମ୍ବା ସେ ଉତ୍ତରାଧିକାରୀ ମନୋନୀତ କରି ନ ଥିଲେ । ତାଙ୍କର ଏକମାତ୍ର କନ୍ୟା ଫାତିମା ଅଲ୍ଲୀଙ୍କୁ ବିବାହ କରାଇଥିଲେ । ସେଇ କନ୍ୟା ଫାତିମା ଅଲ୍ଲୀଙ୍କର ହାସାନ ଓ ହୁସେନ୍ ନାମରେ ଦୁଇଟି ପୁତ୍ର ସନ୍ତାନ ଥିଲେ ।

ମହମ୍ମଦଙ୍କ ପରେ ତିନିଜଣ ଖଲିଫାଙ୍କ ଅନ୍ତେ ଚତୁର୍ଥ ଖଲିଫା ଭାବେ ଅଲ୍ଲୀ ମନୋନୀତ ହେଲେ । ତାଙ୍କ ସମାଜର ବହୁ ଲୋକ ଏହାର ବିରୋଧ କରୁଥିଲେ । ଅଲ୍ଲୀଙ୍କୁ ହତ୍ୟା କରାଗଲା ଓ ତାଙ୍କ ପୁତ୍ର ହାସାନ୍ ଖଲିଫା ହେଲେ । ଅଲ୍ଲୀଙ୍କର ଅନ୍ୟତମ ପୁତ୍ର ହୁସେନ୍ ମହରମ୍ ମାସର ଦଶମ ଦିବସରେ କେର୍‌ବେଲା ଯୁଦ୍ଧରେ ଏକ ଦୁଃଖ ଦାୟକ ପରିସ୍ଥିତିରେ ମୃତ୍ୟୁ ବରଣ କରିଥିଲେ ।

ମୁସ୍‌ଲିମ୍‌ମାନେ ମହରମ୍ ଦିବସରେ ଶୋଭାଯାତ୍ରା ବାହାର କରନ୍ତି । ତାଜିଆ ବା ମୃତାତ୍ମାଙ୍କ କବରର ଏକ ସୁଶୋଭିତ ସ୍ୱରୂପକୁ ଶୋଭାଯାତ୍ରାରେ ନିଆଯାଏ । ଶୋକ ପାଳନକାରୀ ସର୍ବସାଧାରଣରେ ଶୋକ ପ୍ରକାଶ କରନ୍ତି । ଶୋଭାଯାତ୍ରାର ଶେଷରେ ତାଜିଆକୁ କବର ଦିଆଯାଏ କିମ୍ବା ନଦୀ ବା ସମୁଦ୍ରରେ ଭସାଇ ଦିଆଯାଏ । ଏହି ଘଟଣାକୁ ଆଧାର କରି ନାଟକ ଆଦି ମଧ୍ୟ ପରିବେଷଣ କରାଯାଏ । ମହରମ୍‌ର ପ୍ରଥମ ଦଶ ଦିନରେ ଉପବାସ, ଶୋକ ପାଳନ ଓ ପ୍ରାର୍ଥନା ଆଦି ପାଳିତ ହୋଇଥାଏ । ମହରମର ପବିତ୍ରତା ଅନ୍ୟ ଧର୍ମ ଓ ସଂପ୍ରଦାୟ ମଧ୍ୟରେ ବେଶ୍ ପ୍ରଭାବ ପକାଏ । ଭାରତ ଏକ ଧର୍ମ ନିରେପେକ୍ଷ ଦେଶ ହୋଇଥିବାରୁ ଏହି ପର୍ବର ମହତ୍ୱ ଅନେକ ।

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

## ପଞ୍ଜାବର ଲୋକ କଥା

ପଞ୍ଜାବ, ପଞ୍ଚ ନଦୀର ଦେଶ, ଏହା ଭାରତର ଉତ୍ତର-ପଶ୍ଚିମ ଦିଗରେ ଅବସ୍ଥିତ । 'ପଞ୍ଜ' ଶବ୍ଦର ଅର୍ଥ ପାଞ୍ଚ ଓ 'ଅବ୍' ଶବ୍ଦର ଅର୍ଥ ପାଣି- ସମ୍ପୂର୍ଣ୍ଣ ଅର୍ଥରେ ପଞ୍ଚନଦୀ । ଇତିହାସ ରେ ପାଞ୍ଚଟି ନଦୀର ବର୍ଣ୍ଣନା ରହିଛି- ବ୍ୟାସ, ସତଲେଜ୍, ରାବି, ଚେନାବ୍ ଓ ଝେଲମ୍ ଯେଉଁ ଗୁଡିକ ପଞ୍ଜାବ ମଧ୍ୟରେ ପ୍ରବାହିତ । କିନ୍ତୁ ସେମାନେ ଭୌଗଳିକ କାରଣରୁ ସେମାନଙ୍କର ଦିଗ ପରିବର୍ତ୍ତନ କରିବା ଫଳରେ ଏବେ କେବଳ ସତ୍‌ଲେଜ ଓ ବ୍ୟାସ ନଦୀ ପଞ୍ଜାବ ମଧ୍ୟରେ ପ୍ରବାହିତ ହେଉଛନ୍ତି ।

ଏହି ରାଜ୍ୟର ଉତ୍ତରରେ ଜାମ୍ମୁ ଓ କାଶ୍ମୀର୍, ପୂର୍ବରେ ହିମାଚଳ ପ୍ରଦେଶ, ହରିଆଣା, ଦକ୍ଷିଣରେ ରାଜସ୍ଥାନ ଓ ପାକିସ୍ଥାନ ପଶ୍ଚିମରେ ଅବସ୍ଥିତ । ପଞ୍ଜାବ ଓ ହରିଆନାର ରାଜଧାନୀ ଚଣ୍ଡିଗଡ । ଏହି ରାଜ୍ୟର ଆୟତନ ୫୦,୦୦୦ ବର୍ଗ କିଲୋମିଟର ଓ ଏହାର ଜନସଂଖ୍ୟା ୨୪,୨୮୯,୩୦୦ ଅଟେ । ଏହାର ସରକାରୀ ଭାଷା ପଞ୍ଜାବୀ ଓ ଲିପି ଗୁରୁମୁଖୀ ।

ଏବେ ଆମେ ଯେଉଁ ପଞ୍ଜାବ ଦେଖୁଛେ ତାହା ନଭେମ୍ବର ୧, ୧୯୬୬ରେ ସ୍ଥାପିତ । ଏହାର ଅନ୍ୟ ଏକ ଅଂଶ ହରିଆଣା ରାଜ୍ୟ । ପଞ୍ଜାବରେ କୃଷି ଏକ ସବୁଜ ବିପ୍ଳବରେ ପରିଣତ ହୋଇଛି । ସାରା ଦେଶରେ ଏହାର ଦୁଗ୍ଧ ଉତ୍ପାଦନ ସବୁଠାରୁ ବେଶୀ ।

# ସପ୍ତମ ରାଜକୁମାର

ଏକଦା ସତିନ୍ଦର୍ ନାମରେ ଜଣେ ରାଜା ଥିଲେ । ତା'ଙ୍କର ସାତୋଟି ପୁଅ । ତା'ଙ୍କର ପଡୋଶୀ ରାଜ୍ୟର ରାଜା ଭାତିନ୍ଦର୍, ତାଙ୍କର ସାତୋଟି ଝିଅ । ଯେତେବେଳେ ସତିନ୍ଦର୍‌ଙ୍କ ପୁତ୍ରମାନେ ବିବାହ ଯୋଗ୍ୟ ହୋଇଗଲେ, ସେ ଭାବିଲେ ଭାତିନ୍ଦର୍‌ଙ୍କ ସାତୋଟି କନ୍ୟାଙ୍କ ଠାରୁ ଅଧିକ ଯୋଗ୍ୟ ବୋହୁ ତା'ଙ୍କୁ ଆଉ କେଉଁଠୁ ବା ମିଳିବେ ? ତେଣୁ ସେ ତା'ଙ୍କର ଜଣେ ଦୂତକୁ ଏହି ପ୍ରସ୍ତାବ ଦେଇ



ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

ପଠାଇଲେ । ଭାତିନ୍ଦର୍ ପ୍ରସ୍ତାବ ଶୁଣି ଆଚମ୍ୱିତ ହେଲେ । ସେ କେବେ ବି ଭାବି ନ ଥିଲେ ଯେ, ଏତେ ସହଜରେ ତା'ଙ୍କର ସବୁ ଝିଅଙ୍କ ପାଇଁ ଉପଯୁକ୍ତ ବରପାତ୍ର ଏକା ସଙ୍ଗେ ମିଳିଯିବେ । ତେଣୁ ସେ ତତ୍‌କ୍ଷଣାତ୍ ରାଜି ହୋଇଗଲେ ।

କିନ୍ତୁ ସତିନ୍ଦର୍‌ଙ୍କ ସପ୍ତମ ପୁତ୍ର ରାଜେନ୍ଦ୍ର ବଡ ବିଚିତ୍ର ଯୁବକ । ''ମୋ ଭାଇମାନେ ବାହା ହେବେ ବୋଲି, ମୁଁ ମଧ ବାହା ହୋଇ ପଡିବି !'' ଏପରି ଚିନ୍ତା କରି ସେ ପିତାଙ୍କୁ ଜଣାଇ ଦେଲା ଯେ, ସେ ଏବେ ବାହା ହେବାକୁ ପ୍ରସ୍ତୁତ ନୁହେଁ ।

''ଆରେ, ପୁତର୍ ! ବୃଦ୍ଧ ବୟସରେ ମୋତେ କାହିଁକି ହଇରାଣ କରୁଛୁ ? *ଆଛି କୁଡିରେ !* ତାକୁ ବିବାହ ହୁଅ'' ପିତା ବୁଝାଇବାକୁ ଚେଷ୍ଟା କଲେ । କିନ୍ତୁ ରାଜିନ୍ଦର ନିଜ ଜିଦ୍‌ରେ ଅଟଳ ରହିଲେ ।

ଅନ୍ୟ କୌଣସି ଉପାୟ ନ ଦେଖି ଛଅ ପୁଅଙ୍କ ସହିତ ଛଅ ଝିଅଙ୍କ ବିବାହ ହୋଇଗଲା ।

ଏବେ ଛଅ ଭଉଣୀ ଚିନ୍ତା କଲେ ଯେ ରାଜେନ୍ଦ୍ରକୁ ତା'ଙ୍କ ଭଉଣୀକୁ ବିବାହ ପାଇଁ ରାଜି କରାଇବାକୁ ପଡିବ । ପ୍ରଥମ ଭଉଣୀ ବୁଝାଇବାକୁ ଚେଷ୍ଟା କଲା । ମାତ୍ର ବିଫଳ ହେବାରୁ ରାଗିଯାଇ କହିଲା, ''ତେବେ ତୁମେ କାହାକୁ ବାହା ହେବ ଦେଖିବା ? *ଅନାରକଲିକୁ* ? କେଉଁଠୁ ମିଳିବ ସେ ?''

ସବୁ ଭଉଣୀ ଚେଷ୍ଟା କରି ନିରାଶ ହେଲେ ଓ ତା'କୁ ଧମକ ଦେଲେ, ''ତେବେ ତୁମେ *ଅନାରକଲୀକୁ* ବାହା ହେବ ?''

ରାଜେନ୍ଦ୍ର ଖୁବ୍ ରାଗିଗଲା । ସେ ତା'ର ବାପାଙ୍କୁ କହିଲା, ''ମୁଁ ଘରୁ ବାହାରି ଯାଉଛି । ଯେତେଦିନ ଯାଏଁ ମୋତେ *ଅନାରକଲୀ* ନ ମିଳଛି ଓ ମୁଁ ତା'କୁ ବିବାହ ନ ହୋଇଛି ମୁଁ ଘରକୁ ଫେରିବି ନାହିଁ ।



ପିତା ବିରକ୍ତି ହେଲେ, ମା' ବୁଝାଇଲେ, ଭାଇମାନେ ଗାଳିମନ୍ଦ କଲେ, କିନ୍ତୁ ସେ ତା'ର ନିଷ୍ପତ୍ତି ବଦଳାଇଲା ନାହିଁ । ସେ ତା'ର ଧଳା ଘୋଡା ଉପରେ ବସି ଅନାରକଲିର ସନ୍ଧାନରେ ବାହାରି ଗଲା ।

ସେ ବହୁତ ଦୂର ଚାଲିଗଲା । ତା' ପରେ ଗୋଟିଏ ଉଦ୍ୟାନ ନିକଟରେ ସେ ଘୋଡାରୁ ଓହ୍ଲାଇଲା । ଉଦ୍ୟାନଟି ଶୁଷ୍କ ଓ ଅବହେଳିତ ମନେ ହେଉଥିଲା । ସେଠାରେ ସେ ବିଶ୍ରାମ ନେଉ ନେଉ ନିଦ ଆସିଗଲା । ନିଦ ଭାଙ୍ଗିବା ବେଳକୁ ସନ୍ଧ୍ୟା ହୋଇ ଯାଇଥାଏ । ସେ ଉଦ୍ୟାନର ଚତୁଃପାର୍ଶ୍ୱରେ ବୁଲାବୁଲି କରି ଗୋଟିଏ ବଡ ଜଳପୂର୍ଣ୍ଣ ପୁଷ୍କରିଣୀ ଦେଖିଲା । ସେଠାରେ କେତେକ ପାତ୍ର ଥାଏ । ସେ ସାମାନ୍ୟ ଜଳପାନ କଲା ଓ ଉଦ୍ୟାନର ଗଛ ଗୁଡିକରେ ପାଣି ଦେବାକୁ ସ୍ଥିର କଲା । ପାଣି ଦେଉ ଦେଉ ସେ ବଗିଚାରେ ଜଣେ ସନ୍ଥଙ୍କୁ ଗଭୀର ଧ୍ୟାନରେ ବସିଥିବାର ଦେଖିଲା ।

ଓଡ଼ିଆପୋର୍ଟାଲ.ଇନ୍



Digitized By OdiaPortal.IN

## ବଲେ ବଲେ



ପଞ୍ଜାବ ଦୁଇଟି ଲୋକ ନୃତ୍ୟପାଇଁ ପରିଚିତ । ଗୋଟିଏ ଗିଦ୍ଧା ଓ ଦ୍ୱିତୀୟଟି ଭାଙ୍ଗରା । ଆଗରୁ 'ଭାଙ୍ଗରା' ବୈଶାଖୀ ପର୍ବର (ଏପ୍ରିଲ୍ ୧୩) ଉତ୍ସବ ଭାବେ ପାଳିତ ହେଉଥିଲା, ଯାହା ଫସଲ ଅମଳର ସମ୍ମାନରେ ଏହା କରାଯାଏ । ଏବେ ଭାଙ୍ଗରା ଜନ୍ମଦିନ, ବିବାହ ଓ ଅନ୍ୟାନ୍ୟ ଉତ୍ସବ ମାନଙ୍କରେ ଅନୁଷ୍ଠିତ ହୁଏ ।

ଏହି ଲୋକନୃତ୍ୟର ମୁଖ୍ୟଆକର୍ଷଣ ଏହାର ଦୃଢ଼ ସଂଗୀତ ସ୍ୱର, ଓ ନୃତ୍ୟଶୈଳୀ । ଏହି ନୃତ୍ୟ ସହ ବାଜୁଥିବା ଢୋଲର ଶବ୍ଦ ସତରେ ଅପୂର୍ବ । ଏହି ସଂଗୀତର ଲିଖନ ଓ ଶୈଳୀ ପଞ୍ଜାବର ଲୋକ କାହାଣୀ ଉପରେ ପର୍ଯ୍ୟବେଶିତ ।

ପ୍ରକୃତରେ ସେହି ଉଦ୍ୟାନଟିକୁ ସେହି ସାଧୁ ତିଆରି କରିଥିଲେ । ସେ ଛଅମାସ ସେହି ଉଦ୍ୟାନରେ ଯତ୍ନ ନିଅନ୍ତି ଓ ଆଉ ଛଅମାସ ଧ୍ୟାନରେ ବସନ୍ତି । ରାଜକୁମାର ସେହି ଉଦ୍ୟାନରେ ରହିଲେ । ଓ ସାଧୁଙ୍କର ଧ୍ୟାନଭଗ୍ନ ହେବାଯାଏଁ ଅପେକ୍ଷା କଲେ । କାରଣ ସେ ଭାବୁଥିଲେ ଯେ ସମ୍ଭବତଃ ସାଧୁ ଅନାରକଲିଙ୍କ ସମ୍ବନ୍ଧରେ କିଛି ଜାଣିଥିବେ ।

କିଛି ଦିନ ପରେ ଉଦ୍ୟାନର ଚେହେରାରେ ପରିବର୍ତ୍ତନ ଦେଖାଗଲା । ଭଲଭାବେ ପାଣି ଦେଇ ଯତ୍ନ ନେବାରୁ ଉଦ୍ୟାନ ସୁନ୍ଦର ଦିଶିଲା ଓ ବିଭିନ୍ନ ରଙ୍ଗର ଫୁଲ ଫୁଟି ତା'ର ସୁଗନ୍ଧ ବିତରିତ ହେଲା ।

ଦିନେ ସନ୍ଥଙ୍କର ଧ୍ୟାନ ଭଗ୍ନ ହେଲା । ସେ ଚକ୍ଷୁ ଖୋଲିଲେ । ସେ ଉଦ୍ୟାନର ସୌନ୍ଦର୍ଯ୍ୟ ଓ ରଙ୍ଗବେରଙ୍ଗର ଫୁଲ ଫୁଟିଥିବାର ଦେଖି ଖୁବ୍ ଖୁସି ହୋଇଗଲେ । ଏତିକିବେଳେ ରାଜପୁତ୍ର ଜଳପାତ୍ର ଧରି ସେଆଡକୁ ଆସିଲେ । ସେ ସାଧୁଙ୍କୁ ଧ୍ୟାନରୁ ଉଠିଥିବାର ଦେଖି ପ୍ରଣାମ ଜଣାଇଲେ ।

''ପୁତ୍ର ! ତୁମେ ଏହି ଉଦ୍ୟାନର ଯତ୍ନ ନେଉଥିଲ ?'' ସନ୍ଥ ପଚାରିଲେ ।

''ହଁ, ଉଦ୍ୟାନରେ ମୁଁ ଜଳ ସିଞ୍ଚନ କରୁଥିଲି ।'' ରାଜପୁତ୍ର ବିନୟୀ ହୋଇ କହିଲେ ।

''ତୁମେ ଜଣେ ଭଲ ମଣିଷ । ମୁଁ ତୁମ ଉପରେ ପ୍ରୀତ । ତୁମର କିଛି ଇଚ୍ଛା ଥିଲେ ପ୍ରକାଶ କର ।'' ସନ୍ଥ କହିଲେ ।

ରାଜେନ୍ଦ୍ର ତା'ଙ୍କୁ ସମ୍ମାନର ସହ ଧନ୍ୟବାଦ ଜଣାଇ କହିଲେ, ''ମୁଁ ଜଣେ ରାଜପୁତ୍ର । ଧନ ଓ ଐଶ୍ୱର୍ଯ୍ୟରେ ମୋର ଅଭାବ ନାହିଁ । କିନ୍ତୁ ମୁଁ ଅନାରକଲି ସନ୍ଧାନରେ ବାହାରିଛି । ଆପଣ ତା' ବିଷୟରେ କିଛି ଜଣାଇଲେ ମୁଁ କୃତଜ୍ଞ ହେବି ।''

''ଏହି ପେଣ୍ଡୁଟି ନିଅ । ବାଟରେ ଗଡାଇ ଗଡାଇ ନେବ ଓ ଗୋଟିଏ ଡାଳିମ୍ବ ଗଛ ମୂଳରେ ଏହା ଅଟକିଯିବ । ସେପରି ହେଲେ ତୁମେ ସେ ଗଛରୁ



ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

ସବୁଠାରୁ ବଡ ଡାଳିମ୍ବ ତୋଳିବ । ତା'ଭିତରେ ତୁମେ ଅନାରକଲିକୁ ଭେଟିବ । ମାତ୍ର ଘରେ ନ ପହଞ୍ଚିବା ଯାଏଁ ଫଳଟିକୁ କାଟିବ ନାହିଁ, ନହେଲେ ତୁମକୁ ଅନାରକଲିକୁ ହରାଇବାକୁ ପଡିପାରେ ।''

ରାଜକୁମାର ଠିକ୍ ସେପରି କଲେ ଓ ବଡ ଡାଳିମ୍ବ ନେଇ ଘରକୁ ଫେରିଲେ । ଘରେ ପହଞ୍ଚିବା ପୂର୍ବରୁ ଗୋଟିଏ ଉଦ୍ୟାନରେ ବିଶ୍ରାମ ନେଲେ । ହଠାତ୍ ତା' ମନରେ ଆଶଙ୍କା ହେଲା ଯେ ହୁଏତ ଏହି ଡାଳିମ୍ବ ଭିତରେ ଅନାରକଲି ନ ଥିବ ଓ ସେ ସମସ୍ତଙ୍କ ଆଗରେ ଅପଦସ୍ତ ହେବ । ତେଣୁ ସେ ଫଳଟିକୁ କାଟି ପକାଇଲା । ତତ୍କ୍ଷଣାତ୍ ଗୋଟିଏ ସୁନ୍ଦରୀ କନ୍ୟା ତା'ଭିତରୁ ଆସିଲା । ସେ ସୁନେଲି ଓ ସବୁଜ ରଙ୍ଗର ପୋଷାକ ପିନ୍ଧିଥିଲା । ଓ ଗୋଟିଏ ଚମତ୍କାର ମାଳା ପିନ୍ଧିଥିଲା । ତା'କୁ ଦେଖି ରାଜକୁମାର ଚେତା ହରାଇଲେ । ଝିଅଟି ହିଁ ଥିଲା ଅନାରକଲି । ସେ ରାଜକୁମାର ଙ୍କୁ ତାଙ୍କ କୋଳକୁ ନେଇ ଚେତାଫେରିବା ପର୍ଯ୍ୟନ୍ତ ଅପେକ୍ଷା କଲେ ।

ଏହି ସମୟରେ ହରପ୍ରୀତ ନାମକ ଜଣେ ସ୍ତ୍ରୀ ଲୋକ ସେଠାରେ ଆସି ପହଞ୍ଚିଲେ । ସେ ପଚାରିଲେ: ''କିଏ ତୁମେ ସୁନ୍ଦରୀ ? ଏଠାରେ ତୁମେ କ'ଣ କରୁଛ ?''- ସେ ଅନାରକଲିଙ୍କୁ ପଚାରିଲେ ।

ଏଥର ସେହି ସୁନ୍ଦରୀ ରାଜକୁମାରଟି ସବୁକଥା ମନ ଖୋଲି କହିଲା । ''ସେ ମତେ ଗୋଟିଏ ମୁହୂର୍ତ୍ତ ଦେଖିଛନ୍ତି କି ନାହିଁ, ମୂର୍ଚ୍ଛା ହୋଇଗଲେ । ମୁଁ ତାଙ୍କର ଚେତା ଫେରିଆସିବା ଯାଏ ଅପେକ୍ଷା କରୁଛି ।''- ସେ କହିଲା ।

ପ୍ରକୃତରେ ହରପ୍ରୀତ ହିଁ ରାଜକୁମାରଙ୍କୁ ବିବାହ କରିବାକୁ ଇଚ୍ଛା କରୁଥିଲା । ତେଣୁ ସେ ରାଜକୁମାରୀର ସମସ୍ତ ରାଜକୀୟ ପୋଷାକ ଓ ଗହଣା ପିନ୍ଧି ପକେଇବାକୁ ଚାହୁଁଥିଲା ।



''ଆଃ, ତୁମେ କି ସୁନ୍ଦର 'ଲେହେଙ୍ଗା' (ପୋଷାକ) ପିନ୍ଧିଛ ! ପୁଣିତୁମ ଓଢ଼ଣୀ... କେତେ ସୁନ୍ଦର ସତେ ! ତୁମେ ତୁମର ପୋଷାକ ମତେ ଥରେ ପିନ୍ଧିବାକୁ ଦିଅନ୍ତନି ? ସତରେ ଏପରି ରାଜକୁମାରୀ ର ପୋଷାକ ମୁଁ କଦାଚିତ୍ ପିନ୍ଧି ନାହିଁ । ମତେ ଦିନଟିଏ ପାଇଁ ତୁମ ପୋଷାକ ଧାର ଦିଅନା ?''- ସେ ରାଜକୁାରୀଙ୍କୁ ତାଙ୍କ ପୋଷାକ ମାଗିଲା ।

ତା'ପରେ ସେ କହିଲା: ''ମୁ ଏଥର ନିଜକୁ ଦେଖିବାକୁ ଚାହେଁ । ଏହି ପୋଷାକ ପିନ୍ଧି କିପରି ଦିଶୁଛି ? ଏଠି ଗୋଟେ କୂଅ ଅଛି, ମୁଁ ତାର ଜଳରେ ମୋର ପ୍ରତିବିମ୍ବ ଦେଖିବାକୁ ଯିବି । ତୁମେ ମୋ ସହ ଆସିବ କି ?''

ସେମାନେ ସାଙ୍ଗହୋଇ କୂଅ ପାଖକୁ ଗଲେ ଓ ତାଭିତରକୁ ତୁଙ୍ଗି ଦେଖିଲେ । ଯେତେବେଳେ ରାଜକୁମାରୀ କୂଅ ଭିତରକୁ ଉଙ୍କି ମାରି ଦେଖୁଥାଏ, ସେତେବେଳେ ହରପ୍ରିତ ରାଜକୁମାରୀକୁ କୂଅ ଭିତରକୁ ଠେଲିଦେଲେ । ସେ ଏଥର ରାଜକୁମାରୀର ଓଢ଼ଣାଟି ମୁଣ୍ଡରେ ଟାଣି ରାଜକୁମାରୀ ସ୍ଥାନରେ



ଓଡ଼ିଆପୋର୍ଟାଲ.ଇନ
Digitized By OdiaPortal.IN

ବସିପଡିଲା । ଯେତେବେଳେ ରାଜକୁମାରଙ୍କ ଚେତା ଫେରିଆସିଲା ସେ କହିଲା: ସେ ହିଁ ଅନାରକଲି ! କିନ୍ତୁ ରାଜକୁମାର ମନେ କଲେ- ରାଜକୁମାରୀ କ'ଣ ପାଇଁ ପୂର୍ବପରି ସୁନ୍ଦରୀ ମନେ ହେଉ ନାହାନ୍ତି ! କିନ୍ତୁ ସେ ଯେତେବେଳେ ଦେଖିଲା ପାଖରେ ଆଉ କେହି ନାହାଁନ୍ତି, ସେତେବେଳେ ସେ ହରପ୍ରୀତକୁ ଧରି ଘରକୁ ଚାଲିଗଲେ !

ରାଜପ୍ରସାଦରେ ସେମାନେ ପହଞ୍ଚିବା କ୍ଷଣି ତାଙ୍କୁ ସାଦର ସ୍ୱାଗତ କରାଗଲା । ସେମାନେ ବିବାହ କରି ବେଶ୍ ସୁଖରେ କାଳତିପାତ କଲେ । କିଛି ଦିନ ପରେ ରାଜପ୍ରାସାଦରେ ଖବର ପହଞ୍ଚିଲା: କୂଅ ପାଖରେ ଏକ ସୁନ୍ଦର ଫୁଲ ଫୁଟିଛି, ଶୁଣାଗଲା: କେହିବି ସେ ଫୁଲ ତୋଳିପାରୁ ନାହାନ୍ତି । ହରପ୍ରୀତ ଏକଥା ଶୁଣିବାକୁ ପାଇଲା । ସେ ପରବର୍ତ୍ତୀ ସକାଳେ ପ୍ରବଳ ମୁଣ୍ଡ ବିନ୍ଧାର ବାହାନା କଲା ।

''କଣ କଲେ ତୁମର ମୁଣ୍ଡ ବ୍ୟଥା ଭଲହେବ ?''- ରାଜେନ୍ଦ୍ର ପଚାରିଲେ । ''ତୁମେ ସେ କୂଅ ପାଖରେ ଥିବା ଫୁଲକୁ ତୋଳି, ତାର ପାଖୁଡାକୁ ଦଳି, ତାର ରସ ମୋର କପାଳରେ ଲଗେଇଲେ ମୁଁ ଭଲ ହୋଇଯିବି ।''- ସେ କହିଲା ।

ତା କଥା ମାନି ରାଜକୁମାର କୂଅ ପାଖରୁ ଫୁଲଟି ତୋଳି ଆଣି, ତା'ର ପାଖୁଡାରେ ରସ ଯେମିତି ହରପ୍ରୀତର କପାଳରେ ଲଗେଇଛନ୍ତି, ହଠାତ୍ ତାର ମୁଣ୍ଡବିନ୍ଧା କଷ୍ଟ ବଢିବାକୁ ଲାଗିଲା । ଫଳରେ, ସେ ବିରକ୍ତ ହୋଇ କପାଳ ଉପରର ଲେପ ରାଜପ୍ରାସାଦର ପଡିଆକୁ ଫୋପାଡିଦେଲା । ସେହି ପଡିଆରେ ସୁନ୍ଦର ବଗିଚାଟିଏ ସୃଷ୍ଟି ହେଲା । ଉକ୍ତ ବଗିଚାର ମଝିରେ ସୁନ୍ଦର ଡାଳିମ୍ବ ବୃକ୍ଷରେ ବିରାଟ ନାଲି ଡାଳିମ୍ବଟିଏ ଫଳିଲା । ଯେତେବେଳେ ହରପ୍ରୀତ ଉକ୍ତ ବଗିଚାରେ ଡାଳିମ୍ବ ଗଛଟିକୁ ଦେଖିଲା, ସେ ଭୟରେ ଥରି ଉଠିଲା । ସେ ତାର ନିଜକୋଠରୀକୁ ଯାଇ କୁନ୍ଥେଇବାକୁ ଲାଗିଲା । ''ହେ ଭଗବାନ, ମୋ ପେଟରେ ଅସମ୍ଭବ ଯନ୍ତ୍ରଣା । ମୋର ଏ ଯନ୍ତ୍ରଣା କମିବ ନାହିଁ, ଯେ ପର୍ଯ୍ୟନ୍ତ ବଗିଚାରୁ ସବୁ ବୃକ୍ଷ କାଟି ଦିଆନଯାଇଛି ।''- ସେ ଚିତ୍କାର କରୁଥାଏ ।

ରାଜକୁମାର ଘୋଷଣାକଲେ: ''ଅତିଶିଘ୍ର ଯେ, ଏହି ପଡିଆରୁ ଗଛ ସବୁକୁ ଉଠେଇ ଦେଇ ପାରିବ, ସେ ପୁରସ୍କୃତ ହେବ ।'' ଲୋକେ ପଡିଆରୁ ଗଛ ସଫା କରିବାକୁ ବାହାରିଗଲେ ।

ପରିଶେଷରେ ଜଣେ ଯୁବକ ଆସି ପହଞ୍ଚିଲେ । ସେ ଡାଳିମ୍ବ ଗଛରେ ଫଳଟି ଥିବାର ଦେଖି

## ହସ୍ତକଳା ଓ ଶିଳ୍ପ

ପଞ୍ଜାବ ଏହାର ହସ୍ତକଳା ପାଇଁ ପ୍ରସିଦ୍ଧ । ସୁନ୍ଦର ସୁନ୍ଦର ଗାଲିଚା ଯାହା ଘରର ଚଟାଣରେ ସୋଭାପାଏ ସେଗୁଡିକ ଏଠକାର ଝିଅମାନଙ୍କ ହାତର କାରୁକାର୍ଯ୍ୟରେ ସଜ୍ଜିତ । ଏଥିରେ ସେମାନେ ପାରମ୍ପରିକ ଶୈଳୀ ଓ ରଚିର ବିନ୍ୟାସ କରିଥାନ୍ତି । ଅନ୍ୟ ଏକ ହସ୍ତକଳା ହେଉଛି ଛୁଞ୍ଚି ରେ ବୁଣା ହୋଇଥିବା ଫୁଲକରି ଯାହା କପଡା ବା ରୁମାଲରେ ପକାଯାଏ । ପଞ୍ଜାବର କାଠରେ ତିଆରି କାରୁକାର୍ଯ୍ୟ ଅପୂର୍ବ ଏବଂ ପ୍ରସିଦ୍ଧ ।





ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN



ତୋଳିନେଲେ ସ ତାଙ୍କର ବୃଦ୍ଧା ମା'ଙ୍କୁ ଦେଲେ । ରାତିରେ ସେମାନେ 'ଶୋରିଷର ଶାଗ' ଓ 'ମକ୍କାରୋଟି' ସହ ଟିକିଏ ଲହୁଣୀ ଲଗେଇ ଖାଇଲା ପରେ ଡାଳିମ୍ବଟିକୁ କାଟିବାକୁ ବସିଲାରୁ ସୁନ୍ଦର ଅନାରକଲି ବାହାରିଲା !

"ମତେଭୟ କର ନାହିଁ"- ସେ କହିଲା । "ମୁଁ ତୁମର ଅତିଥି ଓ ତୁମକୁ ସାହାଯ୍ୟ କରିବି ।"

ମା' ଓ ପୁଅ ଏହି ସୁନ୍ଦରୀ ଝିଅଟିର କଥାରେ ଖୁସୀହେଲେ । ପରବର୍ତ୍ତୀ ଦିନ ଝିଅଟି ଏକ କପଡା ଓ ଛୁଞ୍ଚିନେଇ ଏକ ସୁନ୍ଦର ଫୁଲପକା ରୁମାଲ୍ ତିଆରି କଲା ।

ଏହି ରୁମାଲଟି ରାଜକୁମାର ରାଜେନ୍ଦ୍ରଙ୍କୁ ବିକ୍ରୀ କରିବ ଓ ସେ ତୁମକୁ ବେଶ୍ ଭଲ ପଇସା ଦେବେ ।

ରାଜକୁମାର ରାଜେନ୍ଦ୍ର ରୁମାଲଟି ଦେଖି ଖୁସୀ ହେଲେ ଓ ପିଲାଟିକୁ ଡାକି କହିଲେ: "କୁହତ ଏତେ ସୁନ୍ଦର ରୁମାଲ କିଏ କରିଛି ।"

"ମୋ ଭଉଣୀ ।"- ସେ କହିଲା ।

"ଏତେ ସୁନ୍ଦର ରୁମାଲ ଯେ ବୁଣି ପାରେ, ସେ କେତେ ସୁନ୍ଦର ହେଇନଥିବ !"- ରାଜକୁମାର ଚିନ୍ତାକଲେ ।

"ମୁଁ ତୁମର ଭଉଣୀଙ୍କୁ ଭେଟିବାକୁ ଚାହେଁ ।"- ରାଜକୁମାର କହିଲେ ।

ପିଲାଟି ରାଜକୁମାରଙ୍କୁ ତାଙ୍କ ଘରକୁ ନେଲା ଓ ସେଠାରେ ରାଜକୁମାର ଅନାରକଲିକୁ ଦେଖି ଚକିତ ହେଲେ ! ସେ ତାଙ୍କୁ ନେଇ ରାଣୀ ମା'ଙ୍କ ସାଙ୍ଗରେ ପରିଚୟ କରାଇଲେ ଓ ବିବାହ କଲେ । ତା'ପରେରେ ସେ ହରପ୍ରୀତ କୁ ରାଜ୍ୟରୁ ନିର୍ବାସିତ କଲେ ।

ରାଜକୁମାର ରାଜେନ୍ଦ୍ର ଓ ରାଜକୁମାରୀ ଅନାରକଲି ଖୁସୀରେ ରହିଲେ ।

## ପଞ୍ଜାବର ପ୍ରସିଦ୍ଧ ସ୍ଥାନ

ଅମୃତସର୍ ଶିଖ୍ ମାନଙ୍କର ପବିତ୍ର ପୀଠ । 'ଅମୃତ୍‌ସର ଅର୍ଥ 'ଅମୃତ କୁଣ୍ଡ' । ଏହି ସହରର ନିର୍ମାତା ଚତୁର୍ଥ ଶିଖ ଗୁରୁ ଗୁରୁରାମଦାସ । ଶିଖ ମାନଙ୍କର ପବିତ୍ରପୀଠର ନାମ 'ସ୍ୱର୍ଣ୍ଣମନ୍ଦିର' ଯାହା ଅମୃତ୍‌ସର୍‌ରେ ଅବସ୍ଥିତ । ଏହାର ପ୍ରସିଦ୍ଧର କାରଣ, ଏହାର ଶୀର୍ଷଭାଗ ଏକ ସ୍ୱର୍ଣ୍ଣପତ୍ର ଦ୍ୱାରା ଆଚ୍ଛାଦିତ । ୧୯୧୯ରେ ସଂଘଟିତ ଜାଲିଓ୍ୱାନ୍‌ଓ୍ୱାଲାବାଗ୍ ହତ୍ୟାକାଣ୍ଡ ସ୍ଥଳଟି ଅମୃତସର ନିକଟରେ ଅବସ୍ଥିତ ।

ଚଣ୍ଡିଗଡ ଭାରତର ସବୁଠାରୁ ସୁନ୍ଦର ସହର । ଏହା ପ୍ରସିଦ୍ଧ ଫରାସୀ ଶିଳ୍ପୀ ଲେ କରବୁସିୟରଙ୍କ ଦ୍ୱାରା ସଂଯୋଜିତ 'ରକ୍ ଗାର୍ଡେନ୍' 'ରୋଜ୍ ଗାର୍ଡେନ୍' ଓ ପିଞ୍ଜୋର୍ ଗାର୍ଡେନ୍ ପ୍ରଭୃତି ଏହାର ଆକର୍ଷଣ ।



Digitized By OdiaPortal.IN
ଓଡ଼ିଆପୋର୍ଟାଲ.ଇନ୍

# ମା'ର ବିଶ୍ୱାସ

ମା' ଘରଚଟିଆ ତା'ର ସବୁଠୁ ସାନ ଛୁଆକୁ ଦେଖି ବଡ ବଚିନ୍ତାରେ ପଡିଲା । ଆଉ ସବୁ ଛୁଆ ଉଡିବା ଶିଖିଲେଣି, କେବଳ ଏଇ ସାନଟି ବସାରୁ ବାହାରି ନାହିଁ । ଯେତେବେଳେ ମା' ତା'ର ଅପେକ୍ଷାକୃତ ବଡ, ଗୋଲ ଗୋଲ ଆଖିକୁ ଲକ୍ଷ୍ୟ କଲା, ସେ ତା'କୁ ଖୁବ୍ ନୀରିହ ଓ ବୋକା ମନେହେଲା । ସେ ଯେ କେବେ ନିଜେ ନିଜର ଦାୟିତ୍ୱ ନେଇପାରିବ, ମା'ର ବିଶ୍ୱାସ ଆସିଲା ନାହିଁ ।

ସେ ଦୁଃଖରେ ଦୀର୍ଘଶ୍ୱାସ ପକାଇଲା । ତା' ଦ୍ୱାରା ଯେତିକି ହୋଇପାରିବ, ସେ କରିବ । ବାକି ହେଉଛି ତା'ର ଭାଗ୍ୟ !

''ଆସିଲୁରେ ଧନ ! ଏଥର ଉଡି ଶିଖିବା ପାଇଁ ତୋ'ର ଚେଷ୍ଟା କରିବା ଦରକାର ।'' ମା' ମଧୁର ଭାବେ କହିଲେ ।

''ହଁ, ମା !'' ମା ସ୍ୱରକୁ ଅନୁକରଣ କଲାପରି ଧୀର ସ୍ୱରରେ ଆଖିକୁ ବୁଲାଇ ବୁଲାଇ ସେ କହିଲା ।

ପ୍ରତିଦିନ ଚେଷ୍ଟା କରି ସେ ଖୁବ୍ ଚଞ୍ଚଳ ଉଡିବା ଶିଖିନେଲା ଓ କିଛି ଦିନରେ ଏକାକୀ ଗାଁ ଚାରିପଟେ ବୁଲି ଆସିଲା । ମା' ଘରଚଟିଆ ଖୁସି ହେଲା । ହଁ, ସେ ଏବେ ଉଡି ଶିଖିଲାଣି । ମାତ୍ର ଦୁନିଆର ଗତିରୀତି ସେ କ'ଣ ବୁଝିପାରିବ ?

''ଏବେ ତୁ କିପରି ନିଜର ଜୀବନ ରକ୍ଷା କରିବୁ, ସେ କଥା ଶିଖିବାକୁ ପଡିବ । ଖୋଲା ପଡିଆ ଜାଗାରେ ଯଦି କୌଣସି ଲୋକ ଧନୁତୀର ଧରି ଆସୁଥିବ କି ବାଟୁଲିଖଡା ଧରି ଆସୁଥିବ, ତେବେ ସେଠାରୁ ଶୀଘ୍ର ବାହାରି ଆସିବୁ ।''

''ହଁ, ମା'' ଛୁଆ ମୁଣ୍ଡ ହଲେଇଲା ।

''ଆଉ ଯଦି କେହି ଜଣେ ହଠାତ୍ ନଇଁପଡି କ'ଣ ଗୋଟାଇବାର ଦେଖିବୁ, ସେଠାରୁ ଶୀଘ୍ର ଉଡି ଆସିବୁ, ସେ ହୁଏତ ଟେକା ଉଠାଉ ଥାଇପାରେ !''

''ହଁ ମାମା !'' ଛୁଆ ଉତ୍ତର ଦେଲା ।

ଯିଏ ତଳକୁ ନଇଁ ନଥିବ, କି ହାତରେ କିଛି ଧରି ନ ଥିବ, ତା'କୁ ଡରିବୁ ନାହିଁ ।''- ମା' କହିଲା ।

''କିନ୍ତୁ ଜଣେ ଯଦି ତା' ପକେଟ୍‌ରେ ଟେକା ରଖିଥାଏ ?'' ଛୁଆ ପଚାରିଲା

ମାଆ ନୀରବ ହୋଇଗଲା । ତା'ପରେ କହିଲା, ''ତୁ ମୋଠାରୁ ବେଶି ଜାଣିଲୁଣି । ଏଥରକ ତୁ ନିଜ ଦାୟିତ୍ୱ ନେଇ ପାରିବୁ, ମୋର ଚିନ୍ତା ଗଲା !''




ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN



# ବିଘ୍ନେଶ୍ୱର

ତାରକାସୁର ପ୍ରବଳ ପରାକ୍ରମରେ ଶାସନ କରିବାକୁ ଲାଗିଲା । ତା' ସାଥିରେ ତ୍ରିପୁରାସୁର ନାମକ ତିନି ରାକ୍ଷସ ମଧ ତପସ୍ୟା ଜରିଆରେ ନାନା ପ୍ରକାର ବରଲାଭ କରିଥାନ୍ତି । ସେମାନେ ଆକାଶରେ ଉଡ଼ି ପାରିଲା ଭଳି ତିନୋଟି ଭବନ ନିର୍ମାଣ କରିଥାନ୍ତି । ଏଣେତେଣେ ଉଡ଼ି କେଉଁ ଅଞ୍ଚଳ ଉପରେ ପ୍ରଚଣ୍ଡ ବର୍ଷା କରୁଥାନ୍ତି ତ କେଉଁ ମୁଲକ ଜଳାଇ ଛାରଖାର କରିଦେଉଥା'ନ୍ତି ।

ଦେବଗଣ ଯେତେବେଳେ ଜାଣିଲେ ଯେ ଶିବଙ୍କ ଛଡା ତ୍ରିପୁରାସୁର ଆଉ କାହା ହାତରେ ମରିବା ସମ୍ଭବ ନୁହେଁ, ସେତେବେଳେ ସେମାନେ ଶିବ-ପୁରୀକୁ ଯାଇ ଉଚ୍ଚକଣ୍ଠରେ ତାଙ୍କ ସ୍ତବଗାନ ଆରମ୍ଭ କଲେ । ଯେତେବେଳେ ଶିବ ତ୍ରିପୁରାସୁରର ଉପଦ୍ରବ କଥା ଶୁଣିଲେ, ସେତେବେଳେ ସେ ତ୍ରିଶୂଳ ହସ୍ତେ ତାକୁ ବଧ କରିବା ନିମନ୍ତେ ବାହାରି ପଡିଲେ ।

ସେତିକିବେଳେ ଗୋଟାଏ ଜଟାଧାରୀ ହାତୀ ରୂପରେ ଏକ ରାକ୍ଷସ-ରାଜା ଉତ୍ପାତ ଆରମ୍ଭ କଲା । ହାତୀଭଳି ଆକୃତି ବୋଲି ତା' ନାମ ହେଲା ଗଜାସୁର । ସେ ଥିଲା କିନ୍ତୁ ବଡ଼ ଶିବଭକ୍ତ । ଶିବଙ୍କ ଛଡ଼ା ଆଉ କାହା ହାତରେ ତା'ର ମୃତ୍ୟୁ ହେବନାହିଁ ବୋଲି ସେ ବରଲାଭ କରିଥାଏ ।

ଗଜାସୁରର ବିଚିତ୍ର ବ୍ୟକ୍ତିତ୍ୱ ଆଗରେ ଦେବତାମାନେ କ'ଣ କରିବେ କିଛି ଠଉରାଇ ପାରିଲେ ନାହିଁ । ଏକ ଦିଗରେ ସେ ଭୀଷଣ ଉପଦ୍ରବକାରୀ । ଅନ୍ୟଦିଗରେ ସେ ଅତ୍ୟନ୍ତ ଶିବ ଭକ୍ତ । ଏକମାତ୍ର ଶିବ ହିଁ ତାକୁ ଯାହା କହିବେ, ସେ ତାହା କରିବ । କିନ୍ତୁ ଶିବ ସାଧାରଣତଃ ଭକ୍ତମାନଙ୍କୁ କିଛି କହନ୍ତି ନାହିଁ । ସେମାନଙ୍କୁ ସ୍ନେହ ଭରେ ରକ୍ଷା କରନ୍ତି । ଦେବତାମାନେ ବାରମ୍ବାର ନିଜ ନିଜ ଭିତରେ ଆଲୋଚନା କରି ମଧ କୌଣସି ଉପାୟ ନିରୂପଣ କରିପାରିଲେ ନାହିଁ ।

ନାରଦ ଗଜାସୁରର ହିତୈଷୀ ଭଳି ତାକୁ

ଓଡ଼ିଆପୋର୍ଟାଲ.ଇନ
Digitized By OdiaPortal.IN



କହିଲେ, ''ବାବୁ ଗଜାସୁର ! ତମେ ଯଦି ଶିବଙ୍କୁ ନିଜ ଭିତରେ ଲୁଚାଇ ରଖିବ, ତେବେ କେଡ଼େ ଭଲ ନ ହେବ !''

ଏ ପରାମର୍ଶ ଗଜାସୁରକୁ ଭାରି ଭଲ ଲାଗିଲା । ସେ ଆରାଧନା କରି ଶିବଙ୍କୁ ତୁଷ୍ଟ କଲା । ଗଜାସୁରର ବାସନା ପୂର୍ଣ୍ଣ କରି ଶିବ ଆସି ତା' ହୃଦୟରେ ଏକ ପ୍ରତୀକ ଭଳି ରହିଲେ ।

ଶିବ ଗଜାସୁରର ହୃଦୟରେ ଲୁଚି ରହିଲେ, ସେପଟେ ତ୍ରିପୁରାସୁରକୁ ବଧ କରିବ କିଏ ? ଦେବତାମାନଙ୍କ ଭିତରେ ଏ ନେଇ ଭାଳେଣି ପଡ଼ିଲା । ପୁଣି ଶିବପାର୍ବତୀଙ୍କ ସନ୍ତାନ ତାରକାସୁରକୁ ନିଧନ କରିବା କଥା । ଶିବ ତ୍ରିପୁରାସୁର ହୃଦୟରେ ରହିଗଲେ ସେ ଯୋଜନା ମଧ୍ୟ କାର୍ଯ୍ୟକାରୀ ହୋଇପାରିବ ନାହିଁ ।

ନାରଦଙ୍କ ପରାମର୍ଶ କ୍ରମେ ଦେବଗଣ ଯାଇ ଗଜାସୁର ଆଗରେ ବସି ଶିବଙ୍କ ସ୍ତୁତିଗାନ କଲେ । ଗଜାସୁର ନିଜେ ମଧ୍ୟ ମୁଗ୍ଧ ହୋଇ ସେମାନଙ୍କ ସହ ସ୍ତୁତିଗାନ କଲା । ଶିବ ଆନନ୍ଦିତ ହୋଇ ଗଜାସୁର ଭିତରୁ ବାହାରି ଆସିଲେ । ଗଜାସୁରକୁ ଲାଗିଲା ସତେ ଅବା ତା'ର ହୃଦୟ ବିଦୀର୍ଣ୍ଣ ହୋଇଗଲା । ସେ ତଳେ ଲୋଟି ପଡିଲା ଓ ଶିବଙ୍କୁ କହିଲା, ''ମହାପ୍ରଭୁ ! ତମେ ସିନା ଚିରକାଳ ମୋ ହୃଦୟରେ ରହିବ ବୋଲି ମୁଁ ବିଶ୍ୱାସ କରିଥିଲି ! ଏବେ ଏ କ'ଣ ହେଲା ?''

ଶିବ କହିଲେ, ''ବତ୍ସ ! ମୁଁ ଆଜିଠାରୁ ତୋ ସ୍ମୃତି ମୋ ନିଜ କଳେବରରେ ଧାରଣ କରିବି । ହାତୀଚର୍ମ ପରିଧାନ କରିବି ।'' ଏହାପରେ ସେ ଗଜାସୁରର ଆତ୍ମାକୁ କୈବଲ୍ୟ ମୁକ୍ତି ପ୍ରଦାନ କଲେ ।

ଶିବ ପୃଥିବୀକୁ ରଥ, ସୂର୍ଯ୍ୟ ଓ ଚନ୍ଦ୍ରକୁ ରଥର ଚକ୍ର, ବେଦକୁ ଅଶ୍ୱ, ବ୍ରହ୍ମାଙ୍କୁ ସାରଥୀ, ମେରୁ ପର୍ବତକୁ ଧନୁ, ତଥା ବିଷ୍ଣୁଙ୍କୁ ତୀର ରୂପେ ଗ୍ରହଣ କରି ତ୍ରିପୁରାସୁରକୁ ସାମ୍ନା କରିବାକୁ ଚାଲିଲେ । ନନ୍ଦୀ, ଶୃଙ୍ଗୀ, ଭୃଙ୍ଗୀ ଆଦି ପ୍ରଥମଗଣ ଅନୁଚର ରୂପେ ତାଙ୍କ ସାଥିରେ ଗଲେ । ସପରିବାରେ ଦେବଗଣ ତ୍ରିପୁରାସୁର ସହ ତାଙ୍କ ଯୁଦ୍ଧ ଦେଖିବା ନିମନ୍ତେ ତାଙ୍କୁ ଦୂରରୁ ଅନୁସରଣ କଲେ ।

ତେଣ ପାର୍ବତୀ ଏକାକିନୀ ଥିଲା ବେଳେ ନାରଦ ଯାଇ ତାଙ୍କୁ କହିଲେ କି ତାରକାସୁର ଓ ବଜ୍ରଦନ୍ତ ଭଳି ରାକ୍ଷସମାନେ ଶିବଙ୍କ ଅନିଷ୍ଟ ଚିନ୍ତା କରୁଛନ୍ତି । ହୁଏତ କେତେବେଳେ ସେମାନେ ଶିବଙ୍କ ହାନି କରି ବସିବେ !

ପାର୍ବତୀ ଏହା ଶୁଣି ବଡ଼ ଦୁଶ୍ଚିନ୍ତାରେ ପଡ଼ିଲେ । ଶିବଙ୍କ ବିହୁନେ ତାଙ୍କୁ ସେ ନିର୍ଜନ ଅଞ୍ଚଳ ମୋଟେ ଭଲ ଲାଗୁ ନଥାଏ । ସେ ନିଜକୁ ଭୁଲାଇ ରଖିବା ନିମନ୍ତେ ଗୋଟିଏ ଛୋଟ ପିତୁଳା ଗଢ଼ିଲେ ଓ ତାକୁ ବାତ୍ସଲ୍ୟଭରା ଦୃଷ୍ଟିରେ ଅନାଇଲେ । ଚାହୁଁ ଚାହୁଁ ଜୀବନ୍ନ୍ୟାସ ପାଇ ସେ ପିତୁଳା ଏକ ସୁନ୍ଦର



Digitized By OdiaPortal.IN
ଓଡ଼ିଆପୋର୍ଟାଲ.ଇନ

ସୁକୁମାର ଶିଶୁରେ ପରିଣତ ହେଲା । ଦେବୀ ଖୁସି ହୋଇ ପଚାରିଲେ, ''ତୁ କିଏ ?''

''ମା ! ତୁମ କାନ୍ତିର ଦ୍ୟୁତି ମୋ କଳେବରରେ ପ୍ରାଣ ସଞ୍ଚାର କରିଛି । ମୁଁ ତୁମ ପୁତ୍ର । ମୋ ନାମ ଗଣପତି ।'' ଶିଶୁଟି କହିଲା । ଦେବୀ ଖୁସି ହୋଇ ଶିଶୁକୁ କୋଳକୁ ନେଲେ ଓ ଖୁବ୍ ଆଦର କଲେ । ତା' ହାତରେ ଗୋଟିଏ ଅଙ୍କୁଶ ଓ ଗଦା ଦେଇ ସେ ତାକୁ କହିଲେ, ''ପୁଅ, ମୁଁ ବର୍ତ୍ତମାନ ସ୍ନାନ କରିବି । ତୁ ଦ୍ୱାର ଦେଶରେ ଥିବୁ । ଘର ଭିତରକୁ କାହାକୁ ହେଲେ ଛାଡ଼ିବୁ ନାହିଁ ।''



ବାଳକ କହିଲା, ''ମା ! ମୋତେ ଭୋକ କଲାଣି । ଖାଇବି କ'ଣ ?''

ପାର୍ବତୀ ପକ୍ୱଫଳ ଏବଂ ମୋଦକ ପ୍ରସ୍ତୁତ କରି ବାଳକକୁ ଦେଲେ । ତା'ପରେ ସେ ସ୍ନାନ ପାଇଁ ଗଲେ ।

ତେଣେ ତାରକାସୁର ଭାବିଲା କି ପାର୍ବତୀଙ୍କୁ ମାରିଦେଲେ ଶିବଙ୍କ ପୁତ୍ରଲାଭ ସମ୍ଭବ ହେବ ନାହିଁ । ଶିବଙ୍କ ପୁଅ ନ ହେଲେ ସେ ନିରାପଦରେ ରହିବ । ସେ ପାର୍ବତୀଙ୍କୁ ଧରିନେବା ନିମନ୍ତେ ବଜ୍ରଦନ୍ତକୁ ନିର୍ଦ୍ଦେଶ ଦେଲା ।

ବଜ୍ରଦନ୍ତର ବଳ ଥିଲା ଅମାପ । ସେ ବଜ୍ରକୁ ବି ଦାନ୍ତରେ ଭାଙ୍ଗି ଚୁର୍‌ମାର୍ କରି ଦେଇ ପାରୁଥିଲା ସକ୍ଷମ । ବଜ୍ରଦନ୍ତ ମୂଷିକ ରୂପ ଧରି ପର୍ବତ ଭିତରେ ପଶି ପର୍ବତକୁ କାଟିକୁଟି ଚୁନା କରିଦେଇ ପାରୁଥିଲା ବୋଲି ତାକୁ ମୂଷିକାସୁର ବୋଲି ମଧ୍ୟ କୁହା ହେଉଥିଲା ।

ପାର୍ବତୀଙ୍କୁ ଧରିନେଇ ଆସିବା ସକାଶେ ସେ ପ୍ରଥମେ କର୍ଣ୍ଣୀ ଓ ଗୋକର୍ଣ୍ଣୀ ନାମକ ନିଜର ଦୁଇଜଣ ଅନୁଚରଙ୍କୁ ପଠାଇଲା ।

ସେ ଦୁଇ ରାକ୍ଷସ ଯୁବକ ରୂପରେ ଶିବ-ପୁରୀରେ ପହଞ୍ଚି ଗଣପତିଙ୍କୁ ଦେଖିଲେ । ଦୁହିଙ୍କ ଦେହରେ ମଇଁଷି ଭଳି ବଳ ଥାଏ । ସେମାନେ ଗଣପତିଙ୍କୁ ସେମାନଙ୍କ ସହ ଖେଳିବାକୁ ଡାକିଲେ ।

''ଆଗେ ତମେମାନେ କିଛି ଖାଇ ନିଅ ।'' ଏହା କହି ଗଣପତି ନିଜ ଖାଦ୍ୟରେ ଦୁଇଟି ଟେଲା ତିଆରି କରି ସେ ଦୁହିଙ୍କ ଉପରକୁ ଫୋପାଡ଼ି ଦେଲେ । ସେ ଟେଲା ମାଡ଼ରେ ଦୁଇ ରାକ୍ଷସଙ୍କ ମୁଣ୍ଡ ବୁଲାଇଦେଲା । ସେମାନେ ତଳେ ପଡ଼ି ଗଡିଲେ ।

ଗଣପତି ସେମାନଙ୍କୁ କହିଲେ, ''ନିଜ ନିଜ କାନ ଧରି ତିନିଥର ଲେଖାଏଁ ଉଠବସ ହୁଅ ଓ ତା'ପରେ ପଳାଅ ।''

ଦୁଇ ରାକ୍ଷସ ଡରିମରି ସେଇଆ କଲେ ଓ ରାକ୍ଷସ ରୂପ ଧରି ସେଠାରୁ ପଳାଇଗଲେ । ଯାଇ ବଜ୍ରଦନ୍ତକୁ ସବୁ ହାଲ୍ ଶୁଣାଇଲେ ।

ବଜ୍ରଦନ୍ତ ହୁଙ୍କାର ଦେଲା ଓ ମୂଷା ରୂପ ଧରି ଗାତ ଖୋଳି ଶିବ-ପୁରୀ ଭିତରେ ପଶିବାକୁ ଉଦ୍ୟତ

ଓଡ଼ିଆପୋର୍ଟାଲ.ଇନ
Digitized By OdiaPortal.IN




ହେଲା । ଗଣପତି ନିଜ ଅଣ୍ଟାରୁ ସୂତା ଖୋଲି ସେଥିରେ ଗୋଟିଏ ଫାସ ତିଆରି କରି ମୂଷିକାସୁର ଉପରକୁ ଫୋପାଡି ତାକୁ ବନ୍ଦୀ କଲେ । ତା' ମୁଣ୍ଡରେ ଦୁଇ ଚାରି ପାହାର ଦେଇ ତା' ଲାଞ୍ଜ ଧରି ଉପରକୁ ଟେକି ତା'ପରେ ଫୋପାଡି ଦେଲେ ।

ସେ ଫୋପଡ଼ା ଖାଇ ଶୂନ୍ୟରେ ଯାଉଁ ଯାଉଁ ମୂଷିକାସୁର ନିଜ ରାକ୍ଷସ ରୂପ ଫେରି ପାଇ ନିଜ ପ୍ରାସାଦ ସାମ୍ନାରେ ଯାଇ କଚାଡି ହୋଇ ପଡିଲା । ତା' ସ୍ତ୍ରୀ ଧବଳା ଥିଲେ ଶିବଭକ୍ତ । ସେ ଶିବଙ୍କୁ ତୁଷ୍ଟ କରି ବର ପାଇଥିଲେ କି ତାଙ୍କ ସ୍ୱାମୀର ମୃତ୍ୟୁ ହେବ ନାହିଁ । ସେ ସେହିକଥା ବଜ୍ରଦନ୍ତକୁ କହି ତାକୁ ଆଶ୍ୱସ୍ତ କଲେ ଓ ସେ ଯେପରି ଭବିଷ୍ୟତରେ ପାର୍ବତୀଙ୍କର କୌଣସି ହାନି କରିବ ନାହିଁ, ସେ ବିଷୟରେ ତାକୁ ଚେତାବନୀ ଦେଲେ ।

* * *

ତ୍ରିପୁରାସୁରକୁ ସଂହାର କରିସାରି ଶିବ ପାର୍ବତୀଙ୍କୁ ସହଳ ଭେଟିବା ଉଦ୍ଦେଶ୍ୟରେ ଘରମୁହାଁ ଚାଲିଲେ । ଗଣପତି ତାଙ୍କ ପଥରୋଧ କଲେ । ''ତମେ କିଏ ?'' ଶିବ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

ଖିଲି ଖିଲି ହସି ଗଣପତି କହିଲେ, ''ମୁଁ ମୋ ମା'ଙ୍କ ପୁଅ ! ମାୟାବୀମାନେ ନାନା ରୂପରେ ଏ ପୁରୀ ମଧ୍ୟରେ ପ୍ରବେଶ କରିବାକୁ ଚେଷ୍ଟା କରୁଛନ୍ତି । ମୁଁ ତେଣୁ ପହରା ଦେଉଛି । କାହାକୁ ପଶିବାକୁ ଦେବି ନାହିଁ ।''

''ଆରେ ବାବୁ, ମୁଁ ଇଶ୍ୱର !'' କହିଲେ ଶିବ ।

''ତମେ ଯିଏ ହୁଅ, ମା'ଙ୍କ ଅନୁମତି ନ ହେଲେ ମୁଁ କାହାକୁ ଭିତରକୁ ପଶିବାକୁ ଦେବି ନାହିଁ । ତାଙ୍କ ଆଦେଶ ପାଳନ ମୋର ଏକମାତ୍ର ଧର୍ମ ।'' ଗଣପତି ସ୍ପଷ୍ଟ ଭାବରେ ଉତ୍ତର ଦେଲେ ।

ଶିବଙ୍କ ପଛେ ପଛେ ତାଙ୍କ ଅନୁଗତ ପ୍ରମଥଗଣ ତଥା ଦେବଗଣ ବି ଶିବଙ୍କ ଗୌରବ ଗାନ କରୁଁ କରୁଁ ସେଠାରେ ଆସି ପହଞ୍ଚି ଯାଇଥାନ୍ତି । କୌଣସି ଅଜଣା ବାଳକ ଶିବଙ୍କୁ ବାଧା ଦେବାରେ ଦେଖି ସେମାନେ ବି ବହୁତ ଆଶ୍ଚର୍ଯ୍ୟ ହେଲେ ।

''ଆରେ ଅଜ୍ଞାନ ବାଳକ ! ତୁ ସୃଷ୍ଟି ରହସ୍ୟ କ'ଣ ଜାଣିଛୁ ? ଇଶ୍ୱର ତୋ ଜନନୀଠାରୁ ମହତ୍ । ତେଣୁ ଏ କ୍ଷେତ୍ରରେ ତାଙ୍କ କଥା ଅମାନ୍ୟ କରି ମୋତେ ବାଟ ଛାଡିଦେଲେ ତୁ କିଛି ଭୁଲ କରିବୁ ନାହିଁ ।'' ଶିବ କହିଲେ ।

''ତମେ ଜ୍ଞାନୀ ଭଳି ଦିଶୁଛ ସତ, କିନ୍ତୁ ମନେ ହୁଏ ତୁମେ ଅସଲ ତତ୍ତ୍ୱ ଜାଣିନାହିଁ ବା ଜାଣିଥିଲେ ଭୁଲି ଯାଇଛ । ଦେବୀହିଁ ଆଦ୍ୟାଶକ୍ତି । ତାଙ୍କଠାରୁ ସଭିଙ୍କ ସୃଷ୍ଟି । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଥରେ ତାଙ୍କ ପ୍ରତି ଅବଜ୍ଞା ଭାବ ପ୍ରଦର୍ଶନ କରନ୍ତେ ସେ ନିଜ ତୃତୀୟ ନୟନ ଖୋଲିଲେ । ସେଥିରୁ ନିର୍ଗତ ଅଗ୍ନିରେ ବ୍ରହ୍ମା ଓ ବିଷ୍ଣୁ ନିଜ ନିଜ ସତ୍ତା ହରାଇଲେ ।

ଓଡ଼ିଆପୋର୍ଟାଲ.ଇନ
Digitized By OdiaPortal.IN




କିନ୍ତୁ ବୁଦ୍ଧିମାନ ଶିବ କହିଲେ, ''ଦେବୀ ! ମୁଁ ତୁମର ବାଧ୍ୟ ହେଲି । କିନ୍ତୁ ତୁମ ତୃତୀୟ ନୟନଟି ମୋତେ ଦାନ କର ।'' ଦେବୀ ତାଙ୍କ ତୃତୀୟ ନୟନ ଶିବଙ୍କୁ ଦେଇ ଦେଲେ । ଶିବ ତାହା ବ୍ୟବହାର କରି ତୁରନ୍ତ ଦେବୀଙ୍କୁ ଭସ୍ମ କରିଦେଲେ ।

ଦେବୀଙ୍କ ଜ୍ୱଳନ୍ତ ଅବସ୍ଥାରେ ଅଗ୍ନି କଣାମାନ ଛିଟିକି ଯାଇ ଜ୍ୟୋତିଷ୍କ ମଣ୍ଡଳର ସୃଜନ ହେଲା । ସେ ଭସ୍ମରାଶିରୁ ବିଶ୍ୱ ସମ୍ଭବ ହେଲା । କିଛି ସମୟ ଜଳି ଦେବୀ ପୁନର୍ବାର ନିଜ ରୂପ ପ୍ରାପ୍ତ ହେଲେ । ସେଥିପାଇଁ ତାଙ୍କୁ ମହାମାୟା ବୋଲି କୁହାଯାଏ । ଶିବଙ୍କ ବୁଦ୍ଧିମତ୍ତାର ପ୍ରଶଂସା କରି ଦେବୀ ତାଙ୍କୁ ବର ଦେଲେ । ବ୍ରହ୍ମା ଓ ବିଷ୍ଣୁଙ୍କୁ ଭସ୍ମରୁ ପୁନରୁଦ୍ଧାର କଲେ । ନିଜ ଭସ୍ମରୁ ବାଣୀ, ଲକ୍ଷ୍ମୀ ଓ ଉମାଙ୍କୁ ସୃଷ୍ଟି କଲେ । ବାଣୀଙ୍କୁ ବ୍ରହ୍ମା, ଲକ୍ଷ୍ମୀଙ୍କୁ ବିଷ୍ଣୁ ଏବଂ ଉମାଙ୍କୁ ଶିବ ଗ୍ରହଣ କରି ଜଗତ ପାଳନ କରନ୍ତୁ ବୋଲି ଦେବୀ ନିର୍ଦ୍ଦେଶ ଦେଲେ ଓ ତା'ପରେ ଅଦୃଶ୍ୟ ହୋଇଗଲେ ।''

ଗଣପତିଙ୍କର ସେଭଳି ପାଣ୍ଡିତ୍ୟପୂର୍ଣ୍ଣ କଥା ଶୁଣି ସବୁ ଦେବାଦେବୀ ଆଶ୍ଚର୍ଯ୍ୟ ତଥା ମୁଗ୍ଧ ହୋଇଯାଇଥାନ୍ତି । ସେତେବେଳକୁ ବ୍ରହ୍ମା ଓ ବିଷ୍ଣୁ ମଧ୍ୟ ସେଠାରେ ପହଞ୍ଚିଯାଇଥାନ୍ତି । ସମସ୍ତେ ବାଳକ ଉପରେ ପ୍ରସନ୍ନ ହେବାର ଦେଖି ଶିବ କ'ଣ କରିବେ ହଠାତ୍ ତାହା ଠଉରାଇପାରିଲେ ନାହିଁ ।

''ଦେଖ ବାଳକ, ତୋ ସହ କଳିତକରାଳ କରିବା ମୋର ଉଦ୍ଦେଶ୍ୟ ନୁହେଁ । ତୁ ଆଉ ବିଶେଷ କିଛି ନ କହି ମୋତେ ବାଟ ଛାଡ଼ି ଦେ ।'' ଶିବ କହିଲେ ।

''ନା, ସେକଥା ହୋଇପାରିବ ନାହିଁ ।'' ଗଣପତି କହିଲେ ।

ଗଣପତିଙ୍କର ସେଭଳି ପାଣ୍ଡିତ୍ୟପୂର୍ଣ୍ଣ କଥା ଶୁଣି

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

ସବୁ ଦେବାଦେବୀ ଆଶ୍ଚର୍ଯ୍ୟ ତଥା ମୁଗ୍ଧ ହୋଇଯାଇଥାନ୍ତି । ସେତେବେଳକୁ ବ୍ରହ୍ମା ଓ ବିଷ୍ଣୁ ମଧ୍ୟ ସେଠାରେ ପହଞ୍ଚିଯାଇଥାନ୍ତି । ସମସ୍ତେ ବାଳକ ଉପରେ ପ୍ରସନ୍ନ ହେବାର ଦେଖି ଶିବ କ'ଣ କରିବେ ହଠାତ୍ ତାହା ଠଉରାଇପାରିଲେ ନାହିଁ ।

''ଦେଖ ବାଳକ, ତୋ ସହ କଳିତକରାଳ କରିବା ମୋର ଉଦ୍ଦେଶ୍ୟ ନୁହେଁ । ତୁ ଆଉ ବିଶେଷ କିଛି ନ କହି ମୋତେ ବାଟ ଛାଡ଼ି ଦେ ।'' ଶିବ କହିଲେ ।

''ନା, ସେକଥା ହୋଇପାରିବ ନାହିଁ । ମୋ ଦେହରେ ପ୍ରାଣ ଥିବା ଯାଏ ମୁଁ କାହାକୁ ଭିତରକୁ ଯିବାକୁ ଦେବି ନାହିଁ ।'' ଗଣପତି କହିଲେ ।

ଶିବ ରାଗିଲେ । ସେ ନିଜ ଅନୁଚର ଗଣମାନଙ୍କୁ ନିର୍ଦ୍ଦେଶ ଦେଲେ ଯେ ସେମାନେ ବାଳକକୁ ହଟାଇ ଦିଅନ୍ତୁ । ସେମାନେ ତାଙ୍କ ଆଡ଼କୁ ମାଡ଼ି ଆସୁଥିବାର ଦେଖି ଗଣପତି ମୃଦୁ ହସି କହିଲେ, ''ମୋତେ ବାଳକ ବୋଲି ତାଚ୍ଛଲ୍ୟ କରୁଥିଲ । ପୁଣି ମୋତେ ହଟାଇବା ପାଇଁ ଏତେ ଅନୁଚର ପ୍ରୟୋଗ କରୁଛ କାହିଁକି ? ବେଶ୍, ମୁଁ ବି ଗଣପତି ।'' ଏହା କହି ବାଳକ ନିଜ ଅଙ୍କୁଶ ଓ ଗଦା ମାଟିରେ ବାଡ଼େଇ ଦେବା ମାତ୍ରେ ତାଙ୍କରି ରୂପଧାରୀ ହଜାର ହଜାର ଗଣପତି ଆବିର୍ଭୂତ ହେଲେ ଓ ଗଦା, ଶୂଳ ଇତ୍ୟାଦି ଉଞ୍ଚାଇ ସେମାନେ ଶିବଙ୍କ ଅନୁଚରମାନଙ୍କୁ ଘଉଡ଼ାଇ ନେଇଗଲେ । ତା'ପରେ ସେମାନେ ଅଦୃଶ୍ୟ ହୋଇଗଲେ ।

ଶିବ କ୍ରୋଧ ବଶରେ ତ୍ରିଶୂଳ ଉଠାଇଲେ । କିନ୍ତୁ ଗଣପତି ନିଜ ଅଙ୍କୁଶ ଦ୍ୱାରା ତ୍ରିଶୂଳକୁ ଆୟତ୍ତ କରିନେଲେ ଓ କହିଲେ, ''ମୋ ହାତରେ ମାତୃଦତ୍ତ ଏ ଅସ୍ତ୍ର ଥିବାଯାଏ ମୋର କେହି କିଛି କରିପାରିବେ ନାହିଁ । ତେବେ ମୁଁ ଅସ୍ତ୍ର ତ୍ୟାଗ କରୁଛି । ତମେ ଯାହା ଇଚ୍ଛା କର । ମା' ତେଣିକି ଯାହା ବ୍ୟବସ୍ଥା କରିବାର କରିବେ ।''

ଗଣପତି ନିଜ ଅଙ୍କୁଶ ଓ ଗଦା ଅଦୂରରେ ରଖିଦେଲେ । ଶିବଙ୍କ ତ୍ରିଶୂଳ ଅଙ୍କୁଶରୁ ମୁକ୍ତ ହୋଇ ବାଳକ ଆଡ଼କୁ ପ୍ରଧାବିତ ହେଲା ଓ ଗଣପତି 'ମା !' ବୋଲି ପାଟି କରିବା ଅବସରରେ ତାଙ୍କ ମୁଣ୍ଡଟି ଉଡ଼ାଇ ଦେଲା । ଅପୂର୍ବ ଦ୍ୟୁତିରେ ଚତୁର୍ଦ୍ଦିଗ ଉଦ୍‌ଭାସିତ ରକି ସେ ମୁଣ୍ଡ ଅନ୍ତରୀକ୍ଷରେ ଅଦୃଶ୍ୟ ହୋଇଗଲା ।

(କ୍ରମଶଃ)



ଓଡ଼ିଆପୋର୍ଟାଲ.ଇନ
Digitized By OdiaPortal.IN



# ଭବିଷ୍ୟବାଣୀ

ଚନ୍ଦ୍ରଗିରିର ଶାସକ ଚତୁରବର୍ମା ସର୍ବଦା ପ୍ରଫୁଲ୍ଲ ଓ ପ୍ରସନ୍ନ ରୁହନ୍ତି ଓ ଅନ୍ୟ ସମସ୍ତଙ୍କୁ ସେହିପରି ହରଷ ଚିତ୍ତରେ ରଖିବାକୁ ଚାହାନ୍ତି । ତା'ଙ୍କ ବିଚାରରେ ଜୀବନ କ୍ଷଣଭଙ୍ଗୁର । କେଉଁ ମୁହୂର୍ତ୍ତରେ କାହାର ମୃତ୍ୟୁ ଘଟିପାରେ । ମନୁଷ୍ୟ ଅଜର, ଅମର ନୁହେଁ । ତେଣୁ ପ୍ରତିଟି କ୍ଷଣ ଆନନ୍ଦ ଉଲ୍ଲାସରେ ବିତାଇବାରେ ପ୍ରକୃତ ସ୍ୱାଦ ରହିଛି । ତେଣୁ ସେ ପ୍ରତ୍ୟେକ କଥାରେ ନୂତନତ୍ୱର ସନ୍ଧାନ କରନ୍ତି ।

ଦିନେ ସନ୍ଧ୍ୟା ସମୟରେ ରାଜା ଓ ରାଣୀ ରାଜଉଦ୍ୟାନରେ ଭ୍ରମଣ କରୁଥିଲେ । ଅଚାନକ ରାଜା ରାଣୀଙ୍କୁ କହିଲେ, ''ଏଇ ସବୁ ଫୁଲ, ଫଳ, ଗଛ ଆମେ ସବୁଦିନ ଦେଖୁଛନ୍ତି । ଏଥିରେ କୌଣସି ନୂତନତ୍ୱର ଅନୁଭବ ମିଳୁ ନାହିଁ । ତୁମେ ଏପରି କିଛି କାମ କର, ଯାହା ଆମକୁ ନୂତନ ଆନନ୍ଦ ଦେଇ ପାରିବ ।''

ତା'ଙ୍କ କଥାରେ ରାଣୀ ହସିଦେଇ କହିଲେ, ''ଆପଣ ବଡ଼ ବିଚିତ୍ର ଲୋକ । ପ୍ରତିଦିନ ନୂଆ ନୂଆ କଥା କେଉଁଠୁ ଆସିବ ?''

ରାଜା ଚିନ୍ତାରେ ପଡିଲେ । କିଛି ସମୟ ପରେ କିହଲେ, '' ତେବେ ଏପରି କରିବା ଏବେ ଏଇ ମାଳୀ ସହିତ ଗପସପ କରି ସମୟ ବିତାଇବା, ମଜା ଲାଗିବ ।'' ସେ ଫୁଲଗଛରେ ପାଣି ଦେଉଥିବା ମାଳୀକୁ ଡକାଇଲେ ।

ମାଳୀ ଦୌଡି ଦୌଡି ଆସି ପହଞ୍ଚିଲା । ସେ ତା'ଙ୍କ ସମ୍ମୁଖରେ ହାତ ଯୋଡି ଠିଆ ହେଲା । ରାଜା ତା'ଙ୍କ ଗଳାରୁ ମୋତିହାର କାଢ଼ି ତା'କୁ ଦେଲେ । ରାଜା ଜାଣିବାକୁ ଚାହିଁଲେ ଯେ, ଏପରି ଅପ୍ରତ୍ୟାଶିତ ପ୍ରାପ୍ତିରେ ସେ କେଉଁ ପ୍ରକାରର ଆନନ୍ଦ ଅନୁଭବ କରୁଛି । କିନ୍ତୁ ମାଳୀ କୌଣସି ପ୍ରତିକ୍ରିୟା ପ୍ରକାଶ କଲା ନାହିଁ । ସେ ନୀରବରେ ମୋତିମାଳାକୁ ଗାମୁଛାରେ ଗୁଡାଇଲା ଓ ସେଠାରୁ ଯିବାକୁ ବାହାରିଲା ।

ମାଳୀର ଏପରି ବ୍ୟବହାରରେ ରାଜା ଚକିତ ହେଲେ । ସେ ତା'କୁ ପଚାରିଲେ, ''ଦେଖ, କୌଣସି ଉପଲକ୍ଷ୍ୟ ନ ଥାଇ ମୁଁ ତୁମକୁ ମୋତିହାର ଉପହାର ଦେଲି । କିନ୍ତୁ ତୁମେ ଏହାକୁ ପାଇ ଆଶ୍ଚର୍ଯ୍ୟ କିମ୍ବା ଆନନ୍ଦ ହେଲ ନାହିଁ । ଏହାର

ନରେନ୍ଦ୍ର

Digitized By OdiaPortal.IN



ମୂଲ୍ୟବାନ ହାର ଉପହାର ଦେବେ ।''

ଏହା କହିବା ପରେ ମାଳୀ କହିଲା: ''ଆପଣ ମୋତେ ଡାକିବା କ୍ଷଣି ମୁଁ ବୁଝି ପାରିଥିଲି ଯେ, ଆପଣ ମୋତେ ହାର ଦେବାକୁ ଡାକୁଛନ୍ତି ।''

ତା' କଥା ଶୁଣି ରାଜା ବିସ୍ମିତ ହୋଇ ପଡିଲେ । ରାଣୀ ବଡ କାତର ହୋଇ ରାଜାଙ୍କୁ କହିଲେ: ''ଆମେ ମଧ୍ୟ ମୁନିବରଙ୍କୁ ଦର୍ଶନ କରିବାକୁ ଯିବା ।''

ରାଜା କିଛି କହିବା ପୂର୍ବରୁ ମାଳୀ କହିଲା: ''ସେ ସ୍ତ୍ରୀଲୋକଙ୍କୁ ଦର୍ଶନ ଦିଅନ୍ତି ନାହିଁ ।''

ଏହା ଶୁଣି ରାଣୀ ମନ ଦୁଃଖ କଲେ ଓ ସେ ରାଜାଙ୍କୁ କହିଲେ: ''ମହାମୁନିଙ୍କର ବ୍ୟବହାର ବେଳେବେଳେ ଆମ ପରି ସାଧାରଣ ମନୁଷ୍ୟ ବୁଝି ପରେ ନାହିଁ । ମୁଁ ନ ହେଲେ ନାହିଁ, ଆପଣ ତା'ଙ୍କର ଦର୍ଶନ ପାଇଁ ନିଶ୍ଚୟ ଯିବେ ।''

ରାଜା ରାଣୀଙ୍କ କଥାକୁ ପସନ୍ଦ କଲେ ନାହିଁ । ସେ କହିଲେ, ''ଦେବୀ, ଭବିଷ୍ୟତ ସମ୍ପର୍କରେ ଆଗରୁ ଜାଣିଗଲେ ଜୀବନର ସ୍ୱାଦ ରହିବ ନାହିଁ ।''

''ଆପଣ ଏପରି ଭାବୁଛନ୍ତି କାହିଁକି ? ଜୀବନର ଅନେକ ସୁନ୍ଦର ଦିଗ ମଧ୍ୟ ଉନ୍ମୋଚିତ ହୋଇପାରେ । ଆପଣଙ୍କୁ ଯିବାକୁ ପଡିବ ।'' ରାଣୀ ଜିଦ୍ ଧରିଲେ ।

ରାଜା ରାଣୀଙ୍କ କଥା ଟାଳି ପାରିଲେ ନାହିଁ ଓ ତା' ପରଦିନ ରଥଉପରେ ବସି ମୁନିଙ୍କ ଦର୍ଶନ ପାଇଁ ବାହାରିଲେ । କିନ୍ତୁ ସେଦିନ ସନ୍ଧ୍ୟା ବେଳକୁ ଚିନ୍ତାଗ୍ରସ୍ତ ହୋଇ ଘରକୁ ଫେରିଲେ । ତା'ଙ୍କ ଚେହେରାରେ ଚିନ୍ତାର ରେଖା ଫୁଟି ଉଠିଥିଲା । ରାଣୀ ବହୁତ ଥର ତା'ଙ୍କ ଚିନ୍ତାର କାରଣ ପଚାରିଲେ । କିନ୍ତୁ ରାଜା ନୀରବ ରହିଲେ । କୌଣସି ଉତ୍ତର ଦେଲେ ନାହିଁ ।

''ଆପଣ ମୋ ପାଖରୁ କିଛି ଗୋପନ

କାରଣ ।''

''ପ୍ରଭୁ ! ମୁଁ ଆଗରୁ ଜାଣିଥିଲି ଯେ ଦିନେ, ଦୁଇଦିନ ମଧ୍ୟରେ ଆପଣ ମୋତେ ଏଇ ହାର ଦେବେ ।'' ମାଳୀ କହିଲା ।

ତା'ର କଥାରେ ରାଜା ଆହୁରି ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ''ତୁମେ ଆଗରୁ ଜାଣିଥିଲ ? ଏହା କିପରି ସମ୍ଭବ ? କିଏ ତୁମକୁ କହିଲା ?''

''ଏହା ଜଣେ ମୁନିବରଙ୍କର ଭବିଷ୍ୟବାଣୀ । ଚାରିଦିନ ତଳେ ମୁଁ ପୂର୍ବଦିଗର ପର୍ବତଶ୍ରେଣୀ ତଳେ ଥିବା ଗ୍ରାମକୁ ଯାଇଥିଲି । ଗ୍ରାମବାସୀମାନେ ମୋତେ କହିଲେ ଯେ ସେଠାକୁ ଜଣେ ମୁନିବର ଆସିଛନ୍ତି ଓ ତା'ଙ୍କର ଭବିଷ୍ୟବାଣୀ ସତ୍ୟ ହେଉଛି । ମୁଁ ସେ ମୁନିଙ୍କୁ ସାକ୍ଷାତ କରିବାକୁ ଗଲି । ମୋତେ ଦେଖିବା କ୍ଷଣି ସେ ତା'ଙ୍କ ହାତରେ ଧରିଥିବା ଦଣ୍ଡକୁ ଉପରକୁ ଉଠାଇଲେ ଓ କହିଲେ: ''ତୁମେ ଖୁବ୍ ଭାଗ୍ୟବାନ, ଖୁବ୍ ଶୀଘ୍ର ରାଜା ତୁମକୁ ଏକ

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

ରଖୁଛନ୍ତି । ମୁନିବର କ'ଣ କହିଲେ ପ୍ରକାଶ କରନ୍ତୁ । ମୋ ରାଣ, ଆପଣଙ୍କୁ କହିବାକୁ ପଡିବ ।'' ରାଜାଙ୍କ ହାତ ନିଜ ମଥା ଉପରେ ଥୋଇ ରାଣୀ କହିଲେ ।

ତା'ପରେ ରାଜା କ୍ଷୀଣ ସ୍ୱରରେ ସବୁ କଥା କହିଲେ । ରାଜାଙ୍କ ପାଦରେ ମାଣିକ୍ୟ ଖଚିତ ଜୋତା ଦେଖି ମୁନି କହିଲେ, ''ରାଜନ୍, ଖୁବ୍‌ଶୀଘ୍ର ଆପଣ ବଡ ଦୟନୀୟ ଅବସ୍ଥାରେ ପଡିବେ । ଏପରିକି ଆପଣଙ୍କ ପାଦର ଜୋତା ମଧ ରହିବ ନାହିଁ । ଜଣେ ଆଦିବାସୀ ଯୁବକ ଆପଣଙ୍କୁ ମୁକୁଟ ପିନ୍ଧାଇବ ।''

ମୁନିଙ୍କ କଥା ଶୁଣି ରାଜା ଭୟରେ କମ୍ପି ଉଠିଲେ । ତା'ଙ୍କ ପାଦତଳର ଭୂମି ଖସିଗଲା ପରି ବୋଧ ହେଲା । କାହାକୁ କିଛି ନ କହି ସେ ସେଠାରୁ ମୁଣ୍ଡ ପୋତି ଫେରି ଆସିଲେ ।

''ଦେବୀ ! ମୁନିଙ୍କ ଭବିଷ୍ୟବାଣୀରୁ ମନେ ହେଉଛି, କୌଣସି ପରାକ୍ରମୀ ରାଜା ଆମ ରାଜ୍ୟକୁ ଆକ୍ରମଣ କରିବେ । ମୋର ପରାଜୟ ହେବ ଓ ବିନା ଜୋତାରେ ମୋତେ ଜଙ୍ଗଲରେ ରହିବାକୁ ପଡିବ । କେଜାଣି କେତେବେଳେ କେଉଁ ଆଦିବାସୀ ଯୁବକ ମୋତେ ସାହାଯ୍ୟ କରିବ ଓ ମୋର ରାଜ୍ୟ ମୁଁ ଫେରି ପାଇବି ।'' ରାଜା ହତାଶ ହୋଇ କହିଲେ ।

ଏହା ଶୁଣି ରାଣୀଙ୍କର ଚେତନା ହଜିଗଲା । ସେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ ଓ କହିଲେ: ''ଆପଣ ସେହି ମୁନିବରଙ୍କୁ ସଙ୍କଟରୁ ଉଦ୍ଧାର ପାଇବାର ଉପାୟ ପଚାରିଲେ ନାହିଁ କାହିଁକି ? ସମ୍ଭବତଃ ଆମକୁ ପୂଜାପାଠ, ଦାନବ୍ରତ କରିବାକୁ ପଡିବ । ଆପଣ ଆଉ ଥରେ ଯାଆନ୍ତୁ ଓ ଏହି କଥା ବୁଝି ଆସନ୍ତୁ ।''

ତା'ପରଦିନ ରାଜା ପୁଣି ଥରେ ମୁନିଙ୍କୁ ସାକ୍ଷାତ କରିବାକୁ ବାହାରିଲେ । ଜଙ୍ଗଲ ପଥରେ ସେହି ସମୟରେ ଗୋଟିଏ ବାଘ ହରିଣର ପିଛା କରୁଥିଲା । ହଠାତ୍ ବାଘଟି ରଥ ଆଗକୁ ଚାଲି ଆସିଲା । ବାଘକୁ ଦେଖିବା କ୍ଷଣି ଅଶ୍ୱ ଭୟ



ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

ପାଇଗଲା ଓ ରଥକୁ ଗୋଟିଏ ପାଖକୁ ଟାଣିନେଇ ଗୋଟିଏ କାଦୁଆ ଜାଗାରେ ପକାଇଦେଲା । ରାଜା ରଥରୁ ତଳକୁ ପଡିଗଲେ । ରଥର ସାରଥୀ ଯେତେ ଚେଷ୍ଟା କଲେ ବି ରଥକୁ ନିଜର ନିୟନ୍ତ୍ରଣରେ ରଖିପାରିଲେ ନାହିଁ ।

ରାଜାଙ୍କ ଜୋତା କାଦୁଅରେ ପୋତି ହୋଇଗଲା । ବିନା ଜୋତାରେ ସେ ବାହାରକୁ ଆସିଲେ । ରଥ ପାଖରେ ପହଞ୍ଚି ସାରଥୀ ପାଖରୁ ଜୋତା ନେଇ ପିନ୍ଧିଲେ ।

ଠିକ୍ ଏତିକିବେଳେ ଜଣେ ଧନୁଧାରୀ ଆଦିବାସୀ ଯୁବକ ସେ ପାଖଦେଇ ଆସିଲା । ରାଜାଙ୍କ ମୁକୁଟ ଗୋଟିଏ ବୁଦା ମୂଳରେ ପଡିଥିବାର ଦେଖି ସେ ତା'କୁ ଉଠାଇ ଆଣି ନିଜ ଗାମୁଛାରେ ପୋଛି ପକାଇଲା ଓ ରାଜାଙ୍କ ମସ୍ତକରେ ପିନ୍ଧାଇ ଦେଇ କହିଲା: ''ମହାରାଜ ଆପଣଙ୍କ ଶରୀରରେ ଆଘାତ ଲାଗିନାହିଁ ତ ?''ଅଧଘଣ୍ଟାଏ ମଧ୍ୟରେ ସାରଥୀ ରଥକୁ ରାସ୍ତା ଉପରକୁ ନେଇ ଆସିଲେ ରାଜା ରଥରେ ବସି କହିଲେ ''ଆଉ ମୁନିଙ୍କ ପାଖକୁ ଯିବା ନାହିଁ । ଚାଲ, ରାଜନବରକୁ ଫେରିଯିବା ।''

ସନ୍ଧ୍ୟା ପୂର୍ବରୁ ରାଜା ରାଜଭବନରେ ପହଞ୍ଚିଗଲେ । ରାଜାଙ୍କ ପୋଷାକ କାଦୁଅରେ ଲଟପଟ ହୋଇଥିବାର ଦେଖି ରାଣୀ କମ୍ପିତ ସ୍ୱରରେ ପଚାରିଲେ, ''କ'ଣ ହେଲା ! ଆପଣଙ୍କର ଏପରି ଅବସ୍ଥା ହେଲା କିପରି ?''

ରାଜା ସବୁକଥା ବର୍ଣ୍ଣନା କରି କହିଲେ । ''ଏହା ନିଃସନ୍ଦେହ ଯେ, ମୁନିଙ୍କର ଭବିଷ୍ୟବାଣୀ ସତ୍ୟ ହୋଇଛି । ସେ ଯାହା ଯାହା କହିଲେ, ତାହାହିଁ ଘଟିଗଲା । କିନ୍ତୁ ଭବିଷ୍ୟତ ସମ୍ପର୍କରେ ମୁଁ କେତେ ପ୍ରକାର ଅନାବଶ୍ୟକ କଳ୍ପନା କଲି ଓ ସେଥିପାଇଁ ମାନସିକ ଯାତନା ଭୋଗ କଲି, ତାହା ଅବର୍ଣ୍ଣନୀୟ । ଭବିଷ୍ୟତ ନ ଜାଣି ଜୀବନର ପ୍ରତିଟି ମୁହୂର୍ତ୍ତର ଆନନ୍ଦ ଉଠାଇବା ହେଉଛି ପ୍ରକୃତ ସୁଖର ମୁଖ୍ୟ କାରଣ ।

ରାଣୀ ତା'ଙ୍କ କଥାରେ ଏକମତ ହେଲେ । ସେ ଦିନଠାରୁ ରାଣୀ ଭବିଷ୍ୟତ ସମ୍ପର୍କରେ ଜାଣିବାକୁ ଚାହିଁଲେ ନାହିଁ । ଭବିଷ୍ୟତ ନଜାଣି ବି ଜୀବନ ର କେତେ ଆନନ୍ଦ ନେଇ ହେବ ରାଜା ରାଣୀ କେବେ କେବେ କହନ୍ତି । ରାଣୀ ସବୁଥିରୁ ନୂତନତ୍ୱର ସନ୍ଧାନ କରନ୍ତି ।



ଓଡ଼ିଆପୋର୍ଟାଲ.ଇନ୍

Digitized By OdiaPortal.IN



# ଶିକ୍ଷକଙ୍କୁ ଶିକ୍ଷା

ଦେବକାନ୍ତ ବହୁ ବର୍ଷ ଧରି ଶିକ୍ଷକତା କରୁଥିଲେ । ଯେଉଁଦିନ ସେ ତା'ଙ୍କ ବୃତ୍ତିରୁ ଅବସର ନେଲେ, ତା'ଙ୍କର ସମ୍ମାନାର୍ଥେ ଏକ ବିଦାୟ ସଭା ଆୟୋଜିତ ହେଲା । ସଭାର ସବୁ ବକ୍ତା ତା'ଙ୍କର ଅପାର ଜ୍ଞାନର ପ୍ରଶଂସା କଲେ । ତା'ଙ୍କ ପରି ଜଣେ ଜ୍ଞାନୀ, ପ୍ରଜ୍ଞାଶୀଳ ଶିକ୍ଷକଙ୍କର ଉଦାହରଣ ନାହିଁ ବୋଲି ମତ ବ୍ୟକ୍ତ କଲେ । ଦେବକାନ୍ତ ଖୁବ୍ ପ୍ରସନ୍ନ ଅନୁଭବ କଲେ ।

ସନ୍ଧ୍ୟା ବେଳକୁ ଘରକୁ ଫେରି ସେ ପତ୍ନୀଙ୍କୁ ଫୁଲମାଳ ଓ ଶାଲ୍ ଦେଖାଇ କହିଲେ: ''ସାବିତ୍ରୀ, ମୁଁ ଯେ ଜଣେ ପ୍ରଚଣ୍ଡ ଜ୍ଞାନୀ, ପଣ୍ଡିତ ଓ ମେଧାବାନ ବ୍ୟକ୍ତି, ଏଥିରେ ମୋର ସନ୍ଦେହ ନାହିଁ । କିନ୍ତୁ ଗୋଟିଏ ଦ୍ୱନ୍ଦ୍ୱ ମୋ ମନରେ ଦୀର୍ଘକାଳ ହେଲା ବସା ବାନ୍ଧିଛି । ମୁଁ ଏତେ ବଡ ପଣ୍ଡିତ ହୋଇ ମଧ୍ୟ ମୋ ଶ୍ରେଣୀରେ ଏତେ କମ୍ ଛାତ୍ର ଯୋଗ ଦିଅନ୍ତି କାହିଁକି ?''

''ତୁମେ ସେମାନଙ୍କୁ ବେତରେ ପିଟୁଥିବ ।'' ସାବିତ୍ରୀ କହିଲେ । ''ମୁଁ ତ ସେପରି କେବେ କରିନାହିଁ କିମ୍ବା ସେପରି ପ୍ରହାର କରିବା ମୋର ନୀତି ବିରୁଦ୍ଧ ।'' ଦେବକାନ୍ତ ଦୃଢ଼ଭାବେ କହିଲେ ।

''ତୁମର ମୋଟା ନିଶକୁ ଦେଖି ପିଲାମାନେ ଡରି ଯାଉଥିବେ । ବିବାହ ସମୟରେ ମୁଁ ଯେତେବେଳେ ପ୍ରଥମେ ତୁମକୁ ଦେଖିଲି, ତୁମର ମୋଟା ନିଶ ଦେଖି ଖୁବ୍ ଡରି ଯାଇଥିଲି ।'' ସାବିତ୍ରୀ ହସି ହସି କହିଲେ ।

ଅବସର ଗ୍ରହଣ ପରେ ଦେବକାନ୍ତ ନିଜ ଗ୍ରାମକୁ ଫେରି ଆସିଲେ, କାରଣ ସହରରେ ଚଳିବା ପାଇଁ ତା'ଙ୍କର ବିଶେଷ ଆୟ ନ ଥିଲା । ଏପରି କିଛି ମୋଟା ଅଙ୍କର ଧନ ସେ ସଞ୍ଚୟ କରି ନ ଥିଲେ ଯାହା ଫଳରେ ସେ ବାକି ଜୀବନ ଆରାମରେ ବିତାଇ ପାରିବେ । ସକାଳୁ ସଞ୍ଜଯାଏ ସେ ଘରେ ରହି ବହି ପଢ଼ନ୍ତି ଓ ନିଜର ସମୟ ବିତାଇଦିଅନ୍ତି ।

ସାବିତ୍ରୀ ତା'ଙ୍କର ଦିନଚର୍ଯ୍ୟାକୁ ଲକ୍ଷ୍ୟ କରି ଦିନେ କହିଲେ: ''ଏତେ ଜ୍ଞାନ ସଂଗ୍ରହ କରି କ'ଣ ଲାଭ ମିଳିବ ? ଅନ୍ୟମାନଙ୍କୁ ବିତରଣ କଲେ ସିନା ଜ୍ଞାନ ସାର୍ଥକ ହେବ । କଥାରେ ଅଛି ବିଦ୍ୟା ଏପରି ଧନ, ଯାହାକୁ ଅନ୍ୟମାନଙ୍କ ମଧ୍ୟରେ ବାଣ୍ଟିଲେ ତା'ର କ୍ଷୟ ହୁଏ ନାହିଁ । ଏହି ଗ୍ରାମରେ ଅନେକ

ବିଶ୍ୱେଶ୍ୱର

Digitized By OdiaPortal.IN



"ଅଶିକ୍ଷିତ ପ୍ରୌଢ଼ ଲୋକ ଅଛନ୍ତି । ସେମାନଙ୍କୁ ଶିକ୍ଷା ପ୍ରଦାନ କର ଓ ଶିକ୍ଷିତ କର । ଗ୍ରାମବାସୀ ମାନେ ତୁମକୁ ସମ୍ମାନ କରିବେ ଓ ତୁମର କିଛି ପୁଣ୍ୟ ଅର୍ଜନ ହେବ ।

ଦେବକାନ୍ତଙ୍କୁ ପତ୍ନୀଙ୍କର ପରାମର୍ଶ ଉଚିତ ମନେହେଲା । ସେ ନିଜେ ଅଶିକ୍ଷିତ ଲୋକମାନଙ୍କ ଘରକୁ ଯାଇ ସେମାନଙ୍କୁ ବିଜୟାଦଶମୀ ଦିନ ମାଗଣାରେ ପାଠ ପଢ଼ିବାକୁ ଆସିବା ପାଇଁ ଅନୁରୋଧ ଜଣାଇଲେ ।

ବିଜୟା ଦଶମୀ ଆସି ପହଞ୍ଚିଲା । ରାତ୍ରି ଭୋଜନ ପରେ ସେ କିଛି ପୁସ୍ତକ ଧରି ପାଠଶାଳାକୁ ଯାଇ ପହଞ୍ଚିଲେ । କିନ୍ତୁ ସେ ଆଶ୍ଚର୍ଯ୍ୟ ହେଲେ ଏଇଥିପାଇଁ ଯେ, ସେଠାରେ ଜଣେ ମାତ୍ର ଲୋକ ବସିଥିଲା । ସେ ଥିଲା ଗ୍ରାମର ଜମିଦାରଙ୍କ ନୌକର ରାମୁ ।

ଗ୍ରାମବାସୀଙ୍କର ଏପରି ଆଚରଣ ଦେବକାନ୍ତଙ୍କୁ ବ୍ୟଥିତ କଲା । ସେ ବହୁତ ସମୟ ଧରି ଅପେକ୍ଷା କଲେ । କାଳେ କେତେଜଣ ଲୋକ ଆସି ପହଞ୍ଚିଯିବେ । କିନ୍ତୁ ତା'ଙ୍କ ଆଶା ନିରାଶାରେ ପରିଣତ ହେବାର ଦେଖି ସେ ରାମୁକୁ କହିଲେ, ''ତୁମକୁ ଏକୁଟିଆ କ'ଣ ପଢ଼ାଇବି ? ମୁଁ ଘରକୁ ଯାଉଛି ।''

କିନ୍ତୁ ରାମୁ ଦେବକାନ୍ତଙ୍କୁ ଯିବାର ଦେଖି ଅନୁରୋଧ କରି କହିଲା: ''ଗୁରୁଜୀ, ମୋ କଥା ଟିକେ ଶୁଣନ୍ତୁ । ମୁଁ ଯେତେବେଳେ ମଇଁଷି ଚରାଇବାକୁ ଯାଏ, ସେତେବେଳେ ଗୋଟିଏ ବାଛୁରୀକୁ ହେଲେ ବି ଖାଦ୍ୟ ନ ଖୁଆଇ ଘରକୁ ଫେରେନାହିଁ ।''

ଦେବକାନ୍ତ ତା'କଥାର ସୂକ୍ଷ୍ମ ଅର୍ଥକୁ ବୁଝି ପାରିଲେ । ପାଠ ପଢ଼ିବା ପାଇଁ ତା'ର ଉତ୍ସାହ ଦେଖି ତା'ଙ୍କୁ ଖୁସି ଲାଗିଲା । ସେ ତା'କୁ କେତେକ ବିଷୟ ପଢ଼ାଇଲେ । କେତେକ ବିଷୟରେ ସୂଚନା ଦେଲେ । ମନୁଷ୍ୟ ଜୀବନରେ ଶିକ୍ଷାର ମହତ୍ତ୍ୱପୂର୍ଣ୍ଣ ସ୍ଥାନ ସମ୍ପର୍କରେ ତା'କୁ ବୁଝାଇଲେ । ତା'କୁ ଅକ୍ଷର

ଓଡ଼ିଆପୋର୍ଟାଲ.ଇନ



Digitized By OdiaPortal.IN

ଶିଖାଇଲେ ଓ ଘରକୁ ତୃପ୍ତ ହୋଇ ଫେରିଲେ ।

ତା' ପରଦିନ ସନ୍ଧ୍ୟାପରେ ଆହୁରି ବେଶି ବହିପତ୍ର ଧରି ସେ ପାଠଶାଳାରେ ପହଞ୍ଚିଗଲେ । ସେଠାରେ ସେ ରାମୁକୁ ନ ଦେଖି ବିସ୍ମିତ ହେଲେ । ଜଣେ ହେଲେ ବି କେହି ସେଠାରେ ନ ଥିଲେ । ବିରକ୍ତ ହୋଇ ସେ ଜମିଦାରଙ୍କ ଘରକୁ ଚାଲିଲେ । ବାହାରେ ଶୋଇଥିବା ରାମୁକୁ ଉଠାଇଲେ ଓ ତା'କୁ ପଚାରିଲେ, ''ଆରେ ଅଭାଗା, ଗୋଟିଏ ଦିନର ପାଠପଢ଼ାରେ ତୁମେ ପଣ୍ଡିତ ହୋଇଗଲ ! କାଲି ତ ବେଶ୍ ଦମ୍ଭରେ କହୁଥିଲ ଯେ ଗୋଟିଏ ବାଛୁରୀ ଗୋଠରେ ଥିବା ପର୍ଯ୍ୟନ୍ତ ତା'କୁ ଚାରା ଖୁଆଇବାରେ ହେଳା କରିବ ନାହିଁ । ମୁଁ ତୁମ କଥାରେ ବିଶ୍ୱାସ କଲି ଓ ତୁମକୁ ବହୁତ ପାଠପଢ଼ାଇଲି । ଆଜି ତୁମେ ସେଠାରେ ଆଦୌ ପହଞ୍ଚିଲ ନାହିଁ ?'' ତା'ଙ୍କ ସ୍ୱରରେ ବିରକ୍ତି ଲାଗି ରହିଥିଲା ।

ରାମୁ ନମ୍ର ଭାବରେ ହାତଯୋଡି କହିଲା: ''ଗୁରୁଜୀ, କ୍ଷମା କରିବେ ମୁଁ କହିଥିଲି, ବାଛୁରୀକୁ ଚାରା ଖୁଆଇବି ତା' ମୁହଁରେ ଜୋର ଜବରଦସ୍ତି ଭର୍ତ୍ତି କରିବି ନାହିଁ ।''

ଏହି କଥା ପଦକ ଦେବକାନ୍ତଙ୍କ ଉପରେ ପ୍ରଭାବ ପକାଇଲା । ଏହା ତା'ଙ୍କୁ ଚାବୁକ ପ୍ରହାର ପରି ମନେ ହେଲା । ଏବେ ସେ ବୁଝି ପାରିଲେ ଯେ, ତା'ଙ୍କ ଶ୍ରେଣୀରେ କାହିଁକି କମ୍ ଛାତ୍ର ଯୋଗ ଦେଉଥିଲେ । ଶିକ୍ଷକ ବହୁତ ଜ୍ଞାନୀ, ବୁଦ୍ଧିମାନ ହୋଇଥିବେ । କିନ୍ତୁ ସେ ଏପରି ଶିକ୍ଷା ପ୍ରଦାନ କରିବା ଉଚିତ୍, ଯାହାକୁ ଛାତ୍ରମାନେ ସହଜରେ ବୁଝିପାରିବେ ଓ ସ୍ପଷ୍ଟଭାବେ ଜାଣି ପାରୁଥିବେ । ତେବେ ଯାଇ ସେମାନେ ଶିକ୍ଷା ପ୍ରତି ଅଭିରୁଚି ପ୍ରକାଶ କରିବେ ଓ ସେଥିପ୍ରତି ଅଧିକ ଧ୍ୟାନ ଦେବେ । ସେମାନଙ୍କୁ ଅତିରିକ୍ତ ପଢ଼ାଇବାକୁ ଚାହିଁଲେ, ସେମାନେ ପାଠ ପ୍ରତି ବିମୁଖ ହେବେ ।

ତା' ପରଠାରୁ ଦେବକାନ୍ତ ପାଠ ପଢ଼ାଇବାର ସଠିକ ଧାରା ବୁଝି ପାରିଲେ । ଗ୍ରାମର ଅଶିକ୍ଷିତ ଲୋକଙ୍କୁ ବିଦ୍ୟା ପ୍ରଦାନ କରି ନିଜ ଜ୍ଞାନକୁ ସାର୍ଥକ କଲେ ।

ପ୍ରତ୍ୟେକ ଦିନ ଏଥର ତାଙ୍କ ଶ୍ରେଣୀକୁ ପନ୍ଦରରୁ ଉର୍ଦ୍ଧ୍ୱ ପୌଢ଼ ବ୍ୟକ୍ତି ପାଠ ପଢ଼ିବା ପାଇଁ ଆସନ୍ତି । ସେ ସେମାନଙ୍କୁ ବେଶ୍ ସ୍ନେହରେ ଆବଶ୍ୟକ ଅନୁଯାୟୀ ପାଠ ପଢ଼ାନ୍ତି । ଅକ୍ଷର ଠାରୁ ଆରମ୍ଭ କରି ବନାନ ପର୍ଯ୍ୟନ୍ତ ଲେଖାନ୍ତି । ମନ ଖୁସୀ କରିବାକୁ ମଝିରେ ମଝିରେ ଗପ କୁହନ୍ତି । ତାଙ୍କର ପାଠପଢିବାର ଚାତୁର୍ଯ୍ୟ ତାଙ୍କୁ ଦିନେ ଜଣେ ଭଲ ଶିକ୍ଷକର ପରିଚିତ ଆଣିଦେଲା ।





Digitized By OdiaPortal.IN



# ଅହଙ୍କାର

ପଣ୍ଡିତ ସଦାଶିବ ଜଣେ ଉଚ୍ଚକୋଟିର ପଣ୍ଡିତ ଓ ମହାଜ୍ଞାନୀ । ତା'ଙ୍କ ଗ୍ରାମ ମଧୁପୁରର ଲୋକେ କାହିଁକି, ଆଖପାଖର ଅନେକ ଗ୍ରାମର ଲୋକମାନେ ତା'ଙ୍କୁ ଖୁବ୍ ସମ୍ମାନ କରନ୍ତି । ତା'ଙ୍କ ଘରେ ଅନେକ ସମୟରେ ଶାସ୍ତ୍ରାଦି ଜ୍ଞାନର ଆଲୋଚନା ଓ ଅନୁଶୀଳନ ଚାଲିଥାଏ ।

ପାରମିତା ତା'ଙ୍କର ଏକମାତ୍ର କନ୍ୟା । ସେ ମଧ ଜଣେ ବିଦୁଷୀ । ଯେଉଁ କଥାର ସୂକ୍ଷ୍ମାର୍ଥକୁ ସାଧାରଣ ଲୋକେ ସହଜରେ ବୁଝି ପାରିବେ ନାହିଁ, ସେ ତା'କୁ ପ୍ରଥମରୁ ଜାଣି ପାରେ । କିଛି ଦିନପରେ ସେ ମଧ ଘରେ ଅନୁଷ୍ଠିତ ହେଉଥିବା ଚର୍ଚ୍ଚାରେ ଭାଗ ନେବାକୁ ଆରମ୍ଭ କଲା । ସେ ତା'ର ବିଦ୍‌ବତ୍ତା ଓ ବାକ୍ ପଟୁତାରେ ଅନେକ ବଡ ବଡ ପଣ୍ଡିତ ଓ ବିଦ୍ୱାନଙ୍କୁ ମଧ ପରାସ୍ତ କଲା ।

ପଣ୍ଡିତ ସଦାଶିବ ନିଜର ଜ୍ଞାନ ଓ ପାଣ୍ଡିତ୍ୟକୁ ନେଇ ଆଦୌ ଗର୍ବ ପ୍ରକାଶ କରନ୍ତି ନାହିଁ । ସେ ସର୍ବଦା କହନ୍ତି, ''ମୋର ଜ୍ଞାନ ଅପରିପକ୍ୱ । ଆହୁରି ଅନେକ କିଛି ଶିଖିବାକୁ ମୋର ବାକି ଅଛି ।'' କିନ୍ତୁ ପାରମିତା ଦମ୍ଭୋକ୍ତି କରେ ଯେ ସେ ସବୁ କିଛି ଜାଣି ସାରିଛି । ଏପରି କୌଣସି ବିଷୟ ନାହିଁ, ଯେଉଁଥିରେ ତା'ର ଦକ୍ଷତା ନାହିଁ । ବୟସ୍କ ପଣ୍ଡିତ ଓ ବିଦ୍ୱାନମାନେ ଯେତେବେଳେ କୌଣସି ଗମ୍ଭୀର ବିଷୟକୁ ନେଇ ଚର୍ଚ୍ଚା କରନ୍ତି ସେ ସେଥିରେ ହସ୍ତକ୍ଷେପ କରେ । ବାଦ-ବିବାଦ ସୃଷ୍ଟି କରେ ଓ ପରିଶେଷରେ ଅବଶ୍ୟ ସେମାନଙ୍କର ସନ୍ଦେହ ଦୂର କରାଏ । ତା'ର ଏପରି ଆଚରଣ ଦିନକୁ ଦିନ ବଢ଼ି ଚାଲିଲା । ଆଲୋଚନା କାଳରେ କାହାର ଭୁଲ୍ ହେଲେ ସେ ତତ୍‌କ୍ଷଣତା ତା'କୁ ସଂଶୋଧନ କରେ । ମାତ୍ର ସେହି ବ୍ୟକ୍ତିର ଜ୍ଞାନ ଓ ପାଣ୍ଡିତ୍ୟକୁ ନେଇ କଟୁବାକ୍ୟ କରେ ଓ ବ୍ୟଙ୍ଗୋକ୍ତି କରେ ।

ଯଦିଓ ତା'ର ଏପରି ଅହଂକାର ବାଲ୍ୟକାଳରୁ ଆରମ୍ଭ ହୋଇଥିଲା । ପିତା ଏଥିପ୍ରତି ବିଶେଷ ଗୁରୁତ୍ୱ ଦେଉ ନ ଥିଲେ । ସେ ଭାବୁଥିଲେ ବୟସ ବୃଦ୍ଧି ସହିତ, ତା'ର ସ୍ୱଭାବରେ ପରିବର୍ତ୍ତନ ଆସିବ ଓ ଏପରି ବୃଥା ଅହଂକାର ତ୍ୟାଗ କରିବ ।

ପଣ୍ଡିତ ସଦାଶିବ ଦୁଇ ତିନିଥର ତା'କୁ ଚୋତବନୀ ଶୁଣାଇଥିଲେ ଯେ, ଗୁରୁଜନ ମାନଙ୍କ କଥାରେ ଏପରି ହସ୍ତକ୍ଷେପ କରିବା ଅନୁଚିତ



Digitized By OdiaPortal.IN
ଓଡ଼ିଆପୋର୍ଟାଲ.ଇନ

କାର୍ଯ୍ୟ । ହୁଏତ, ଏହା ସେମାନଙ୍କ ମନରେ ଆଘାତ ଦେଇପାରେ ।

କିନ୍ତୁ ସେ ପିତାଙ୍କୁ କହେ, ''ପାଣ୍ଡିତ୍ୟ ଓ ଜ୍ଞାନ ସହିତ ବୟସର କ'ଣ ସମ୍ପର୍କ ? ବୟସରେ ବଡ ହେବା ଅର୍ଥ ନୁହେଁ, ସବୁ କିଛି ଜାଣିଯିବା । ମୁର୍ଖ ସବୁବେଳେ ମୁର୍ଖ ରହିବ ।'' ବେଳେ ବେଳେ ସେ ସନ୍ଦେହ ପ୍ରକାଶ କରେ ଯେ ସମ୍ଭବତଃ ପିତା ତା'ର ପ୍ରତିଭାକୁ ଦେଖି ଈର୍ଷା କରୁଛନ୍ତି ।

ଏବେ ପାରମିତା ସତର ବର୍ଷର ହେଲାଣି । ତେବେ ମଧ୍ୟ ତା'ର ଅହଙ୍କାରୀ ସ୍ୱଭାବ ବଦଳିଲା ନାହିଁ । ପଣ୍ଡିତ ସଦାଶିବ ସର୍ବଜ୍ଞାନୀ ଥିଲେ, କିନ୍ତୁ ନିଜ କନ୍ୟାକୁ କିପରି ବାଟକୁ ଆଣିବେ, ତାଙ୍କୁ ମାଲୁମ ପଡୁ ନଥିଲା । ସେ ବହୁତ ମନଦୁଃଖ କରୁଥିଲେ ଓ ସାଥୀ ପଣ୍ଡିତଙ୍କ ଆଗରେ ନିଜର ଦୁଃଖ ବ୍ୟକ୍ତ କଲେ ।

ନବରାତ୍ରି ଉତ୍ସବର ସମୟ । ରାଜଭବନରେ ପଣ୍ଡିତ ସମ୍ମିଳନୀ ଆୟୋଜିତ ହେଲା । ପଣ୍ଡିତ ସଦାଶିବ ସେଠାକୁ ନିମନ୍ତ୍ରିତ ହେଲେ । ତା'ଙ୍କର ଅନୁପସ୍ଥିତିରେ ମଧ୍ୟ ତା'ଙ୍କ ଗୃହରେ ପଣ୍ଡିତମାନଙ୍କର ତର୍କ ସଭା ବସେ । ପାରମିତା ସେହି ସଭାରେ ଯଥାବତ୍ ଅଂଶଗ୍ରହଣ କରେ ଓ ହସ୍ତକ୍ଷେପ କରେ ।

ଦିନେ ପଣ୍ଡିତମାନେ ପରସ୍ପର ଗୋଟିଏ ବିଚିତ୍ର କଥାକୁ ନେଇ ଆଲୋଚନା ଚଳାଇଥିଲେ । ପାରମିତା ସେମାନଙ୍କର କଥା ମନଦେଇ ଶୁଣୁଥିଲା । ସେମାନେ କହୁଥିଲେ ଯେ ଗ୍ରାମର ପୁରାତନ ପୁଷ୍କରିଣୀ ନିକଟରେ ଥିବା ମଣ୍ଡପରେ କେହିଜଣେ କିଛି ଲେଖିଛି । କିନ୍ତୁ କେହି ତା'କୁ ବଡପାଟିରେ ପଢ଼ି ଶୁଣାଇ ପାରୁନାହାନ୍ତି । ଯିଏ ଯାଉଛି । ସେଠାରୁ ମୁହଁ ତଳକୁ କରି ଫେରୁଛି । ଏହା ଶୁଣି ପାରମିତା କହିଲା: ''ମୁଁ ତା'ହା ପଢ଼ିପାରିବି ଯେତେ ଜଟିଳ ହେଉନା କାହିଁକି ତାହା ମୋତେ ବଳାଇବ ନାହିଁ । ନଚେତ୍ ପଣ୍ଡିତ



ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

ସଦାଶିବଙ୍କର ପୁତ୍ରୀ କହିବା ପାଇଁ ମୋର ଅଧିକାର ନାହିଁ ।'' ତା'ର ସ୍ୱରରେ ଦମ୍ଭ ଓ ଅଭିମାନ ଥିଲା ।

ଗ୍ରାମ ସାରା ପ୍ରଚାର ହୋଇଗଲା ଯେ, ମଣ୍ଡପ ଉପରେ ଲେଖାଥିବା ବିଷୟକୁ ପାରମିତା ଉଚ୍ଚସ୍ୱରରେ ପଢ଼ିବା ପାଇଁ ଯାଉଛି । ସବୁ ଲୋକ ସେଠାରେ ସମବେତ ହେଲେ । ପାରମିତା ଆସିଲା ମଣ୍ଡପର ପରଦା ଆଡେଇ ପଢ଼ିବାରେ ଲାଗିଲା ।

''ଯିଏ ଏହା କରି ଦେଖାଇ ପାରିବ, ସେ ଏହାକୁ ଉଚ୍ଚସ୍ୱରରେ ପଢ଼ିବ । ଏଇ ପୁଷ୍କରିଣୀରେ ଦଶ ହାତ ଗଭୀରତାଯାଏଁ କାଦୁଅ ଭରି ରହିଛି । ମୁଁ ଏବେ କୋଦାଳ ଓ ଟୋକେଇ ନେଇ ଯିବି । ଏକୁଟିଆ ସବୁ କାଦୁଅ ବାହାର କରିବି । ଆପଣ ସମସ୍ତେ ମୋ କଥାର ସାକ୍ଷୀ ।''

ସେ ଯେମିତି ପଢ଼ିବା ଶେଷ କରିଛି, କେହି ଜଣେ ତା' ସମ୍ମୁଖରେ କୋଦାଳ ଓ ଟୋକେଇ ଆଣି ରଖିଦେଲା ।

ସେ ଚମକି ପଡି ପଚାରିଲା: ''ଏ' କ'ଣ'' ଉପସ୍ଥିତ ଜନତା କହିଲେ, ''କାଦୁଅ ବାହାର କର ।''

''ମୁଁ ତ' କେବଳ ଲେଖା ପଢ଼ିବା ପାଇଁ କହିଥିଲି । ଏସବୁ କରିବା ପାଇଁ କହି ନ ଥିଲି ।''

''ଆମେ ସବୁ କ'ଣ ମୂର୍ଖ, ଅଶିକ୍ଷିତ ଥିଲୁ ଯେ, ଏହାକୁ ପଢ଼ିପାରୁ ନ ଥିଲୁ ? ସେଥିରେ ସ୍ପଷ୍ଟ ଲେଖା ଅଛି ଯେ, ଯିଏ ଏହାକୁ ଉଚ୍ଚ ସ୍ୱରରେ ପଢ଼ି ଶୁଣାଇବ, ତା'କୁ ଏହି କାମ କରିବାକୁ ପଡିବ । ସେଥିପାଇଁ ଆମେ ମନେ ମନେ ପଢୁଥିଲୁ । ଉଚ୍ଚସ୍ୱରରେ ପଢ଼ିବା ପରି ବୋକାମୀ କରିନାହୁଁ । ତୁମେ ବିନା ବିଚାରରେ ପଢ଼ି ଶୁଣାଇ ପକାଇଲ । ଏବେ କୋଦାଳ, ଟୋକେଇ ଧରି କାମ ଆରମ୍ଭ କର । ନିଜ କଥାରୁ ହଟିବା ପାଣ୍ଡିତ୍ୟର ଲକ୍ଷଣ ନୁହେଁ ।'' ଗ୍ରାମର ବୟସ୍କ ଲୋକମାନେ କହିଲେ ।

ପାରମିତା କିଂକର୍ତ୍ତବ୍ୟବିମୂଢ଼ ହୋଇ କାନ୍ଦି ପକାଇଲା । କେତେଜଣ ତା'କୁ ପରାମର୍ଶ ଦେଲେ, ''ଯେତେବେଳେ ପାର ସେତେବେଳେ ବେଶି ପାଣ୍ଡିତ୍ୟ ଦେଖାଇବା ଠିକ୍ ନୁହେଁ । ଠିକ୍ ସମୟରେ, ଆବଶ୍ୟକତା ପଡିଲେ ତା'ର ଉପଯୋଗ କରିବା ଉଚିତ ।''

ପଣ୍ଡିତ ସଦାଶିବ ଗ୍ରାମକୁ ଫେରିବା ବେଳକୁ ପାରମିତାର ସ୍ୱଭାବରେ ଖୁବ୍ ପରିବର୍ତ୍ତନ ହୋଇଥିଲା । କନ୍ୟାର ଅହଂକାରକୁ ଭାଙ୍ଗି ଦେବା ପାଇଁ, ବନ୍ଧୁମାନଙ୍କର ଉପାୟ ଶୁଣି ସେ ପ୍ରସନ୍ନ ହେଲେ ।



ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN










ଓଡ଼ିଆପୋର୍ଟାଲ.ଇନ
Digitized By OdiaPortal.IN




ସେଠାରେ ସାପମାନଙ୍କ ସହିତ ଏକା ରହୁଛନ୍ତି । ନିଜକୁ ନାଗବନ୍ଧୁ ବୋଲାଉଛନ୍ତି । ଶ୍ରାବଣ ମାସରେ ପାହାଡ ତଳେ ଥିବା ମନ୍ଦିରରେ ସେ ଶିଷ୍ୟମାନଙ୍କୁ ଦର୍ଶନ ଦେଉଛନ୍ତି ।






ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN













Digitized By OdiaPortal.IN
ଓଡ଼ିଆପୋର୍ଟାଲ.ଇନ










କ୍ରମଶଃ

Digitized By OdiaPortal.IN
ଓଡ଼ିଆପୋର୍ଟାଲ.ଇନ୍

## Statement about Ownership of CHANDAMAMA (Oriya)

Rule 8 (Form VI), Newspaper (Central) Rules, 1956

| | | |
|---|---|---|
| 1. | Place of Publication | 82 Defence Officers Colony<br>Ekkatuthangal<br>Chennai-600 097 |
| 2. | Periodicity of Publication | MONTHLY<br>1st of each calendar month |
| 3. | Printer's Name<br>Nationality<br>Address | B. VISWANATHA REDDI<br>INDIAN<br>82 Defence Officers Colony<br>Ekkatuthangal<br>Chennai-600 097 |
| 4. | Publisher's Name<br>Nationality<br>Address | B. VISWANATHA REDDI<br>INDIAN<br>82 Defence Officers Colony<br>Ekkatuthangal<br>Chennai-600 097 |
| 5. | Editor's Name<br><br>Nationality<br>Address | B. VISWANATHA REDDI<br>(Viswam)<br>INDIAN<br>82 Defence Officers Colony<br>Ekkatuthangal<br>Chennai-600 097 |
| 6. | Name and Address of individuals who own the paper | Chandamama India Ltd.<br>Board of Directors:<br>1. P. Sudhir Rao<br>2. Vinod Sethi<br>3. B. Viswanatha Reddi<br>82 Defence Officers Colony<br>Ekkatuthangal<br>Chennai-600 097 |

*I,* **B. Viswanatha Reddi,** *do hereby declare that the particulars given above are true to the best of my knowledge and belief.*

1st March 2002

B. VISWANATHA REDDI
*Publisher*


Get your copy of e-Chandamama today!




You can now play games, online.

Don't wait, just log on to

chandamama org

http://www.chandamama.org

Freebies too!

Play
View
Read
Discuss

Games
Animated story books
India
Hypertales
Issues



Across media, a common tradition!


Digitized By OdiaPortal.IN



ଶୀର୍ଷକ ସନ୍ଧାନ କରନ୍ତୁ

# ଫଟୋ ପରିଚୟ ପ୍ରତିଯୋଗିତା





**ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।**

ପରିଚୟୋକ୍ତି ସହ ନିଜ ଠିକଣା ପୋଷ୍ଟକାର୍ଡ଼ରେ ଇଂରାଜୀରେ ଲେଖା ନିମ୍ନ ଠିକଣାରେ ପଠାନ୍ତୁ ।
ଚିତ୍ର ପରିଚୟ ପ୍ରତିଯୋଗିତା, ଚାନ୍ଦାମାମା, ପ୍ଲଟ ନଂ-୮୨
ଡିଫେନ୍ସ ଅଫିସର୍ସ କଲୋନୀ, ଇକାଟୁଥାଙ୍ଗଲ, ଚେନ୍ନାଇ- ୬୦୦୦୯୭
ମାର୍ଚ୍ଚ ୨୦ ତାରିଖ ସୁଦ୍ଧା ପରିଚୟୋକ୍ତି ଆମ ପାଖରେ ପହଞ୍ଚିବା ଦରକାର । ସର୍ବଶ୍ରେଷ୍ଠ ପ୍ରତିଯୋଗୀଙ୍କୁ ଶହେଟଙ୍କା ପୁରସ୍କାର ଭାବେ ପ୍ରଦାନ କରାଯିବ ।

## ଶୁଭେଚ୍ଛା

ପୂର୍ବ ସଂଖ୍ୟା ଚିତ୍ର ପ୍ରତିଯୋଗିତାର ବିଜେତା
ଶ୍ରୀ ଅଂଶୁମାନ ଦାଶ
କ୍ୱାଟର ନଂ- ବି/୧୨୪
ସେକ୍ଟର-୧
ରାଉରକେଲା-୭୬୯୦୦୮
ଜି. ସୁନ୍ଦରଗଡ଼ (ଓଡ଼ିଶା)

ବିଜୟୀ ପ୍ରତିଯୋଗୀ





୧ମ ଚିତ୍ର : ଆଖି କ୍ୟାମେରାରେ ତୋଳି ମୁଁ ଧରଇ ଦୂର ଦିଗନ୍ତର ଛବି,
୨ୟ ଚିତ୍ର : ଶାନ୍ତି ଓ ପ୍ରେମର ପତାକା ଉଡ଼ାଏ ଆଗାମୀ ଦିନର କବି !

ଜହ୍ନମାମୁ ବାର୍ଷିକ ଦେୟ
ଡାକଯୋଗେ ଟ୧୨୦/-

Payment in favour of CHANDAMAMA INDIA LIMITED
No. 82, Defence Officers Colony, Ekkatuthangal, Chennai - 600 097

Printed and Published by B. Viswanatha Reddi at B.N.K. Press Pvt. Ltd., Chennai - 600 026 on behalf of Chandamama India Limited, No. 82, Defence Officers Colony, Ekkatuthangal, Chennai - 600 097; Editor : Viswam

ଓଡ଼ିଆପୋର୍ଟାଲ.ଇନ୍
Digitized By OdiaPortal.IN

